Licence No. C.R.N.P. 5—Licensed to post without Pre-payment



ଓଡ଼ିଶାର ବରୁଣେଇଠାରେ ଅନୁଷ୍ଠିତ ଭାରତସ୍କାଉଟ୍ ଏବଂ ଗାଇଡ୍‌ର ତୃତୀୟ ଧାର୍କ ଏବଂ ତ୍ରୟୋଦଶ ଜାତୀୟ ଜାମ୍ବୋରୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଓ ଭାରତର ପୂର୍ବତନ ସ୍ୱରାଷ୍ଟ୍ରମନ୍ତ୍ରୀ ଏସ୍.ବି. ଚୌହାନ ଉପସ୍ଥିତ ଅଛନ୍ତି



କଟକ ଜବାହରଲାଲ ନେହେରୁ ଇନ୍‌ଡୋର ଷ୍ଟାଡ଼ିୟମଠାରେ ଅନୁଷ୍ଠିତ ଓଡ଼ିଶା ଗ୍ରାମପଞ୍ଚାୟତ କର୍ମଚାରୀ ସଂଘର ରାଜ୍ୟସ୍ତରୀୟ ସମାବେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି

PRINTED AT ORISSA GOVERNMENT PRESS, CUTTACK-753010




ଭୁବନେଶ୍ୱର ମହାତ୍ମାଗାନ୍ଧୀ ମାର୍ଗଠାରେ ଆୟୋଜିତ ରାଜ୍ୟସ୍ତରୀୟ ସାଧାରଣତନ୍ତ୍ର ଦିବସ
ଉତ୍ସବ ୧୯୯୮ ପରେଡ୍‌ରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି



କଟକ ବାରବାଟୀ ଷ୍ଟାଡିୟମଠାରେ ଆୟୋଜିତ ସାଧାରଣତନ୍ତ୍ର ଦିବସ ଅବସରରେ
ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ମିଳିତ ପରେଡ୍‌ରେ ଅଭିବାଦନ ଗ୍ରହଣ କରୁଛନ୍ତି

# ଉତ୍କଳ ପ୍ରସଙ୍ଗ

୫୪ ଭାଗ ୭ମ ସଂଖ୍ୟା ମାଘ-ଫାଲ୍‌ଗୁନ ୧୯୧୯ ଶକାବ୍ଦ ଫେବୃଆରୀ ୧୯୯୮



''ଉତ୍କଳ ପ୍ରସଙ୍ଗ'' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ ରେ ମୁଦ୍ରିତ ।

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତିଖଣ୍ଡ : ଟ ୨.୦୦

# ସୂଚୀ

# ''ଜ୍ୟେଷ୍ଠାୟ ନମଃ, ଶ୍ରେଷ୍ଠାୟ ନମଃ''

ଉତ୍କଳମଣି ଗୋପବନ୍ଧୁଙ୍କ ଦାୟାଦ, ସ୍ୱନାମଧନ୍ୟ ସାମ୍ବାଦିକ, ଭାରତର ସର୍ବ-ବର୍ଷୀୟାନ ସଂପାଦକ, ଖ୍ୟାତନାମା ସମାଜସେବୀ, ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥଙ୍କ ବିୟୋଗରେ ଉତ୍କଳ ଜନନୀ ତାର ଏକ ସୁଯୋଗ୍ୟ ସନ୍ତାନକୁ ହରାଇଲା । ପ୍ରାଚୀନ ବୈଦିକ ଋଷିଙ୍କର ଗାନ ''ଜୀବେମ ଶରଦଃ ଶତମ୍''-ଏହି ମହୀୟାନ ପୁରୁଷ ତାର ଜୀବନ୍ତ ପ୍ରତୀକ ଥିଲେ । ଶହେ ବର୍ଷର ଅତନ୍ଦ୍ର ନିରଳସ ଜୀବନର ପ୍ରତିକ୍ଷଣ ଉତ୍କଳ ଜନନୀଙ୍କର ସେବାରେ ଉତ୍ସର୍ଗୀକୃତ ହୋଇଥିଲା । ଯେଉଁଠି ବାତ୍ୟା, ମରୁଡ଼ି, ଦୁର୍ଭିକ୍ଷର ପଦଧ୍ୱନି, ସେଠାରେ ତାଙ୍କର କଲ୍ୟାଣ ହସ୍ତ ଦେଖିବାକୁ ମିଳୁଥିଲା । ତାଙ୍କର ପୂର୍ବସୂରୀ ଗୁରୁ ଗୋପବନ୍ଧୁଙ୍କଠାରୁ ସେ ଶିଖିଥିଲେ - ଆର୍ତ୍ତ ମନୁଷ୍ୟର ସେବାଠାରୁ ବଳି ପୁଣ୍ୟ ନାହିଁ ।



ଗୋପବନ୍ଧୁ 'ସମାଜ' ଅନୁଷ୍ଠାନର ପ୍ରତିଷ୍ଠା କରିଥିଲେ । ପରାଧୀନ ଭାରତ ଓ ଓଡ଼ିଶାର ମୁକ୍ତି ସଂଗ୍ରାମର ବାର୍ତ୍ତାବହ ଥିଲା 'ସମାଜ' । ଖଣ୍ଡ ବିଖଣ୍ଡିତ ଏକ ଅଭିମାନୀ ଜାତି ତାର ସ୍ୱାତନ୍ତ୍ର୍ୟ ପାଇଁ ଯେଉଁ ଦୀର୍ଘ ଅଭିଯାନ ଆରମ୍ଭ କରିଥିଲା, 'ସମାଜ' ଥିଲା ତାର ମୁଖପତ୍ର । ରାଧାନାଥ ବାବୁ ଏହି ସଂଗ୍ରାମର ପୁରୋଭାଗରେ ରହିଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା - କିନ୍ତୁ ଓଡ଼ିଆ ଭାଷାଭାଷୀ ଏକ ବିଶାଳ ଅଞ୍ଚଳ ଅଲଗା ରହିଗଲା । ଏହି ଅଞ୍ଚଳର ମିଶ୍ରଣ ପାଇଁ ପ୍ରଥମ ପଦକ୍ଷେପ ଗଡ଼ଜାତ ରାଜ୍ୟମାନଙ୍କର ମିଶ୍ରଣ । ରାଧାନାଥ ବାବୁ ସମ୍ବାଦପତ୍ର ଓ ତାର ବାହାରେ ଏଥିପାଇଁ ଦୀର୍ଘ ଆନ୍ଦୋଳନ କରିଥିଲେ । ତଥାପି ଯେଉଁ ସବୁ ଅଞ୍ଚଳ ବିଚ୍ଛିନ୍ନ ହୋଇ ରହିଗଲା, ସେହି ଓଡ଼ିଆମାନଙ୍କର ନ୍ୟାୟୋଚିତ ଅଧିକାର ପାଇଁ ତାଙ୍କର ପ୍ରାଣ କାନ୍ଦି ଉଠୁଥିଲା । ଓଡ଼ିଆ ଜାତିର ଭାଷା, ସଂସ୍କୃତି, ସ୍ୱାଭିମାନର ସେ ଥିଲେ ଏକ ଅମ୍ଳାନ ପ୍ରତିଭା, ଏକ ଅମଳିନ ଜ୍ୟୋତି ।

'ସମାଜ' ସମ୍ବାଦପତ୍ରକୁ ସେ ନିଜ ହାତରେ ଗଢ଼ିଥିଲେ । ଏକ ନବଜାତ ଶିଶୁକୁ ସେ ମାତୃତୁଲ୍ୟ ପାଳନ ଓ ପୋଷଣ କରିଥିଲେ । ଶ୍ରେଷ୍ଠ ଓଡ଼ିଆ ସମ୍ବାଦପତ୍ର ରୂପେ ତାର ଗର୍ବ, ଗୌରବ ପଛରେ ଥିଲା ତାଙ୍କର ବହୁମୂଲ୍ୟ ସାଧନା, ତ୍ୟାଗ ଓ ତପସ୍ୟା । ଏକ କ୍ଷୁଦ୍ର ଚାରା ଗଛକୁ ସେ ଏକ ବିଶାଳ ମହୀରୁହରେ ପରିଣତ କରିଥିଲେ । ସର୍ବଭାରତୀୟ କ୍ଷେତ୍ରରେ ଲୋକସେବକ ମଣ୍ଡଳର ସେ ଥିଲେ ଅନ୍ୟତମ ପ୍ରାଣପ୍ରତିଷ୍ଠାତା ଓ ଦୀର୍ଘକାଳର ସଭାପତି ।

ଓଡ଼ିଶାର ରାଜନୀତି ଓ ସାଧାରଣ କ୍ଷେତ୍ରକୁ ଯେଉଁ ବହୁ ପ୍ରତିଭାବାନ ବ୍ୟକ୍ତି ସ୍ୱାଧୀନତା ସଂଗ୍ରାମ ବେଳେ ଆକୃଷ୍ଟ ହୋଇଥିଲେ, ତାହା ମଧ୍ୟରେ ସେ ଥିଲେ ଅନ୍ୟତମ । ଏମ୍.ଏଲ୍.ଏ., ମନ୍ତ୍ରୀ ହୋଇଥିଲେ । ଅର୍ଥ, ଶିକ୍ଷା, ଉନ୍ନୟନ ଆଦି ବହୁ ପ୍ରଧାନ ବିଭାଗର ଦାୟିତ୍ୱ ବହନ କରିଥିଲେ ଏବଂ ସଫଳତାର ସହିତ ତାଙ୍କର ଦାୟିତ୍ୱ ପ୍ରତିପାଦନ କରିଥିଲେ । ସାଧାରଣ ଜୀବନରେ ସାଧୁତା ଓ ସଚ୍ଚୋଟତା ପାଇଁ ତାଙ୍କର ଆପୋଷହୀନ ସଂଗ୍ରାମ ଚିରକାଳ ଆଦର୍ଶ ହୋଇ ରହିବ ।

ବ୍ୟକ୍ତିଗତ ଜୀବନରେ ସେ ଥିଲେ ଏକ ଆଦର୍ଶବାଦୀ ନିରାଡ଼ମ୍ବର ପୁରୁଷ । ହୃଦୟବାନ, ସ୍ନେହୀ, ବନ୍ଧୁବତ୍ସଳ । ଓଡ଼ିଶା ଏବଂ ଓଡ଼ିଶା ବାହାରେ ଅଗଣିତ ବନ୍ଧୁ ଆଜି ତାଙ୍କୁ ହରାଇ ଶୂନ୍ୟ ଅନୁଭବ କରୁଥିବେ । ସାମ୍ବାଦିକତା କ୍ଷେତ୍ରରେ ସେ ମୋର ସମଧର୍ମୀ ଥିଲେ । ସାଧାରଣ ଜୀବନରେ ଜଣେ ପ୍ରେରଣାଦାତା ଓ ଦୀର୍ଘକାଳ ଧରି ନିଜର ସ୍ନେହପୂର୍ଣ୍ଣ ବନ୍ଧୁତାରେ ସେ ମୋତେ ଆବଦ୍ଧ କରି ରଖିଥିଲେ । ଆଜି ତାଙ୍କ ବିୟୋଗରେ ଉତ୍କଳମାତା ଶୋକାତୁରା । ମୁଁ ଏହି ଦିବଂଗତ ପୁରୁଷଙ୍କୁ ମୋର ଲୋତକପୂର୍ଣ୍ଣ ବିଦାୟ ଶ୍ରଦ୍ଧାଞ୍ଜଳି ଜଣାଉଛି ।

**ଜାନକୀ ବଲ୍ଲଭ ପଟ୍ଟନାୟକ**
ମୁଖ୍ୟମନ୍ତ୍ରୀ

# ପ୍ରିୟଜନଙ୍କ ବିଚ୍ଛେଦ




ଭୁବନେଶ୍ୱରଠାରେ ଆୟୋଜିତ ରାଜ୍ୟସ୍ତରୀୟ ଡଃ ରାଧାନାଥ ରଥ
ଜନ୍ମଶତବାର୍ଷିକୀ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଡଃ. ରଥଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।



୧୯୯୮, ଫେବୃଆରୀ ତା ୧୨ ରିଖ ଗୁରୁବାର ଦି
ଡଃ. ରାଧାନାଥ ରଥଙ୍କ ପରଲୋକ ଗମନ





ଶତାବ୍ଦୀ ପୁରୁଷ ଡଃ ରାଧାନାଥ ରଥଙ୍କ ମରଣଶରୀରରେ ମୁଖ୍ୟମ
ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପୁଷ୍ପଗୁଚ୍ଛ ଅର୍ପଣ କରୁଛନ୍ତି ।

# ଶତାବ୍ଦୀ ପୁରୁଷଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି

ଡ଼ଃ ରାଧାନାଥ ରଥଙ୍କ ବିୟୋଗରେ ଦେଶ ଜଣେ ସଚ୍ଚା ଗାନ୍ଧୀବାଦୀ, ମହାନ୍ ସ୍ୱାଧୀନତା ସଂଗ୍ରାମୀ, ସମାଜସେବକ ଓ ପ୍ରଖ୍ୟାତ ସାମ୍ବାଦିକଙ୍କୁ ହରାଇଲା ।

**କେ.ଭି. ରଘୁନାଥ ରେଡ୍ଡି**
ରାଜ୍ୟପାଳ

❊

ବିଶିଷ୍ଟ ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ, ପୂର୍ବତନ ମନ୍ତ୍ରୀ, ବର୍ଷୀୟାନ ସାମ୍ବାଦିକ, ଲୋକ ସେବକ ମଣ୍ଡଳର ଆଜୀବନ ସଦସ୍ୟ ଡ଼ଃ ରାଧାନାଥ ରଥଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ ।

ଦେଶ ତଥା ଓଡ଼ିଶା ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ହରାଇଲା ।

ଶୋକ ସନ୍ତପ୍ତ ପରିବାରବର୍ଗଙ୍କୁ ମୁଁ ସମବେଦନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛି ।

**ଗୋପାଳ ରାମାନୁଜମ**
ପୂର୍ବତନ ରାଜ୍ୟପାଳ

❊

ରାଧାନାଥ ବାବୁ ଭାରତମାତାର ଜଣେ ସୁଯୋଗ୍ୟ ସନ୍ତାନ, ଦେଶର ବର୍ଷୀୟାନ ତଥା ପ୍ରବୀଣ ସାମ୍ବାଦିକ ଓ ସଂପାଦକ, ମହାନ୍ ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀ, ସାଧାରଣ ଜୀବନରେ ନୈତିକ ମୂଲ୍ୟବୋଧର ସୁରକ୍ଷା କ୍ଷେତ୍ରରେ ନିର୍ଭୀକ ଯୋଦ୍ଧା ଏବଂ ସଫଳ ରାଜନୀତିଜ୍ଞ ତଥା ପ୍ରଶାସକ ଥିଲେ । ତାଙ୍କ ବିୟୋଗରେ ଓଡ଼ିଶାର ବିସ୍ତର କ୍ଷତି ଘଟିଛି ଓ ଓଡ଼ିଶା ଦରିଦ୍ରତର ହୋଇଯାଇଛି । ଏହି ଶତାବ୍ଦୀ ପୁରୁଷ ବଳିତ ଶତାବ୍ଦୀରେ ଓଡ଼ିଶାର ଜୀବନ୍ତ ଇତିହାସ ଥିଲେ । ଧୁରୀଣ ସାମ୍ବାଦିକ ଏବଂ ରାଜ୍ୟର ଜଣେ ବିଶିଷ୍ଟ ନେତା ଭାବରେ ତାଙ୍କର ସ୍ଥାନ କଦାପି ପୂରଣ ହୋଇ ନପାରେ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**
ମୁଖ୍ୟମନ୍ତ୍ରୀ

❊

''ଶତାବ୍ଦୀ ପୁରୁଷ ରାଧାନାଥ ରଥଙ୍କ ବିୟୋଗରେ ଓଡ଼ିଶାର ଗୋଟିଏ ଯୁଗର ଅବସାନ ଘଟିଲା । ତାଙ୍କର କର୍ମମୟ ଜୀବନ ପ୍ରାୟ ୭୫ ବର୍ଷ ଧରି ରହିଥିଲା ଏବଂ ଏହି ସମୟ ମଧ୍ୟରେ ସେ ଦେଶର ଜଣେ ବିଶିଷ୍ଟ ତଥା ଅଗ୍ରଣୀ ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ, ରାଜନୀତିଜ୍ଞ, ବିଜ୍ଞ ବିଧାୟକ ଓ ପ୍ରଶାସକ, ସର୍ବୋପରି ହୃଦୟବାନ ସମାଜସେବୀ ଥିଲେ । ୧୯୧୯ ମସିହାରେ ସେ 'ସମାଜ' ସମ୍ବାଦପତ୍ରରେ ପରିଚାଳନା ସଂପାଦକ ଭାବେ ଯୋଗ ଦେଇଥିଲେ । ତାଙ୍କରି ହାତରେ 'ସମାଜ' ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇ ଓଡ଼ିଶାରେ ବହୁକାଳ ଧରି ପ୍ରତିଷ୍ଠା ଲାଭ କରିପାରିଛି । ଦେଶର ବୟୋଜ୍ୟେଷ୍ଠ ସାମ୍ବାଦିକ ଭାବରେ ସେ ସାମ୍ବାଦିକତା କ୍ଷେତ୍ରରେ ଦିଗ୍‌ଦର୍ଶକ ଥିଲେ । ସ୍ୱାଧୀନତା ସଂଗ୍ରାମୀ ରୂପେ ସେ ଭାରତ ଛାଡ଼ ଆନ୍ଦୋଳନରେ ଅଢ଼େଇ ବର୍ଷ କାରାବରଣ କରିଥିଲେ । ଦଶବର୍ଷ କାଳ ସେ ଓଡ଼ିଶାର ବିଧାୟକ ଓ ମନ୍ତ୍ରୀ ଥିଲେ । ଜଣେ ବିଜ୍ଞ ବିଧାୟକ ଓ ସୁଦକ୍ଷ ପ୍ରଶାସକ ରୂପେ ସେ ଖ୍ୟାତି ଅର୍ଜନ କରିଥିଲେ । ସେ ଲୋକସେବକ ମଣ୍ଡଳର ଅଧ୍ୟକ୍ଷ ଥିଲେ । ଗୋ-ମଙ୍ଗଳ ସମିତି, ଭାରତ ସ୍କାଉଟ୍‌ସ ଓ ଗାଇଡ୍‌ସ ତଥା ରାଜ୍ୟର ବହୁ ସଂସ୍ଥା ସହ ସେ ଘନିଷ୍ଠ ଭାବରେ ଅନେକ କାଳ ଧରି ସଂପୃକ୍ତ ଥିଲେ ଏବଂ ପଥପ୍ରଦର୍ଶକ ଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ଆଦର୍ଶରେ ସେ ସାରା ଜୀବନ ଅନୁପ୍ରାଣିତ ହୋଇଥିଲେ । ପ୍ରାକୃତିକ ବିପତ୍ତି ବେଳେ ଦୁର୍ଗତ ଲୋକଙ୍କ ସହାୟକ ଭାବେ ସେ ଚିର ସ୍ମରଣୀୟ ହୋଇ ରହିବେ । ତାଙ୍କର କର୍ମମୟ ଜୀବନ ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ।

**ବସନ୍ତ କୁମାର ବିଶ୍ୱାଳ**
ଉପମୁଖ୍ୟମନ୍ତ୍ରୀ

❊

ନିଜର ଜୀବନକାଳ ମଧ୍ୟରେ ସେ ସାମ୍ବାଦିକତା ଛଡ଼ା ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ, ଆଧ୍ୟାତ୍ମିକ କ୍ଷେତ୍ରରେ ନିଜକୁ ନିୟୋଜିତ କରି ଏକ ଅନୁଷ୍ଠାନରେ ପରିଣତ ହୋଇ ଯାଇଥିଲେ । ତାଙ୍କର ବିୟୋଗରେ ଓଡ଼ିଶାରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି ହେଲା ।

**ଜଗନ୍ନାଥ ପଟ୍ଟନାୟକ**
ରାଜସ୍ୱ ମନ୍ତ୍ରୀ

❊

ତାଙ୍କ ବିୟୋଗରେ ସମଗ୍ର ସାମ୍ବାଦିକ ଜଗତର ଏକ ଉଜ୍ଜ୍ୱଳମୟ ଜ୍ୟୋତିଷ୍କର ଅବସାନ ଘଟିଲା । ଏହା ଓଡ଼ିଆ ଜାତି ପାଇଁ ଦାରୁଣ ଦୁଃସମ୍ବାଦ । ଏ ଜାତି ଜଣେ ମହାନ୍ ଜନନାୟକ, ସମାଜସେବୀ ଓ ପରୋପକାରୀଙ୍କୁ ହରାଇଲା । ବିଗତ ଆଠ ଦଶନ୍ଧିରୁ ଊର୍ଦ୍ଧ୍ୱ ତାଙ୍କରି ନିରବଚ୍ଛିନ୍ନ ସାଧନା, ଉତ୍ସର୍ଗୀକୃତ ସେବା ଓ ତ୍ୟାଗ ଅନନ୍ୟ ସାଧାରଣ ଏବଂ ଚିର ସ୍ମରଣୀୟ ଯାହାକି ଆଗାମୀ ଯୁବପୀଢ଼ି ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ।

**ହେମାନନ୍ଦ ବିଶ୍ୱାଳ**
ଉପମୁଖ୍ୟମନ୍ତ୍ରୀ

❊

ରାଧାନାଥ ବାବୁ ଏକାଧାରରେ ଜଣେ ଉଚ୍ଚକୋଟୀର ସମାଜସେବୀ, ନିର୍ଭୀକ ସାମ୍ବାଦିକ ଓ ସଚ୍ଚୋଟ ରାଷ୍ଟ୍ରନାୟକ ଥିଲେ । ଭାରତୀୟ ଲୋକସେବକ ମଣ୍ଡଳର ଆଜୀବନ ସଭ୍ୟ ଥାଇ ସମାଜ ଅନୁଷ୍ଠାନକୁ ଗଢ଼ି ତୋଳିବାରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇରହିବ । ବନ୍ୟା ଓ ଅନ୍ୟାନ୍ୟ ପ୍ରାକୃତିକ ଦୁର୍ବିପାକ ସମୟରେ ରାଧାନାଥ ବାବୁଙ୍କ ସାହାଯ୍ୟ ଓ ରିଲିଫ୍ କାର୍ଯ୍ୟ ତାଙ୍କୁ ଅବିସ୍ମରଣୀୟ କରି ରଖିବ । ନିଜେ ଦୁର୍ନୀତିମୁକ୍ତ ରହି ସାରା ଜୀବନ ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲେ ।

**ପ୍ରସନ୍ନ କୁମାର ଦାଶ**
ପରିବେଶ ମନ୍ତ୍ରୀ

❊

ଡ଼ଃ ରଥ ୭୫ ବର୍ଷ ସାମ୍ବାଦିକତା କ୍ଷେତ୍ରରେ କାର୍ଯ୍ୟ କରି ଶୋଷଣ, ଅତ୍ୟାଚାର ଓ ଦୁର୍ନୀତିକୁ ନିର୍ଭୟରେ ପ୍ରକାଶ କରି ସାମ୍ବାଦିକତାର ଉଜ୍ଜ୍ୱଳ ପରମ୍ପରା ସୃଷ୍ଟି କରି ପାରିଥିଲେ । ଓଡ଼ିଆଙ୍କ ସ୍ୱାର୍ଥଲାଗି ଅବିଶ୍ରାନ୍ତ ସଂଗ୍ରାମ ତାଙ୍କ ଜୀବନର ବ୍ରତ ଥିଲା । ତାଙ୍କର ମୃତ୍ୟୁରେ ଏକ ଯୁଗର ଅବସାନ ଘଟିଲା ।

**ରଘୁନାଥ ପଟ୍ଟନାୟକ**
ଆଇନମନ୍ତ୍ରୀ

❊

ସ୍ୱର୍ଗତ ରଥ ଏକାଧାରରେ ଜଣେ ନିଷ୍ଠାପର ସମାଜସେବୀ, ନିର୍ଭୀକ ସାମ୍ବାଦିକ, ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ବିଶିଷ୍ଟ ରାଜନୀତିଜ୍ଞ ଓ ଧୀସଂପନ୍ନ ବ୍ୟକ୍ତି ଥିଲେ । ସେ ଓଡ଼ିଶାର ଅର୍ଥନୈତିକ, ରାଜନୈତିକ, ସମାଜସେବା ଓ ଆଧ୍ୟାତ୍ମିକ କ୍ଷେତ୍ରରେ ସମସ୍ତଙ୍କର ସ୍ନେହ, ଶ୍ରଦ୍ଧା ଓ ଭକ୍ତି ଭାଜନ ହୋଇପାରିଥିଲେ ।

ଲୋକସେବକ ମଣ୍ଡଳର ସଭାପତି ଓ ସମାଜସେବୀ ହିସାବରେ ସମଗ୍ର ଦେଶରେ ସେ ପରିଚିତ ଥିଲେ । ତାଙ୍କ ମୃତ୍ୟୁରେ ରାଜ୍ୟ ଜଣେ ସର୍ବଗୁଣସଂପନ୍ନ ବ୍ୟକ୍ତିଙ୍କୁ ହରାଇଲା ।

**ମତଲୁବ ଅଲ୍ଲୀ**
ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ

*

ଏକ ନୂତନ ଓଡ଼ିଶା ଗଠନ ପାଇଁ ଡଃ ରଥଙ୍କର ରାଜନୈତିକ, ଅର୍ଥନୈତିକ, ସାମ୍ବାଦିକତା ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଦିଗ୍‌ଦର୍ଶନ ତାଙ୍କ ବିରଳ ବ୍ୟକ୍ତିତ୍ୱର ଏକ ନିଚ୍ଛକ ନିଦର୍ଶନ । ଓଡ଼ିଶାର ଜନ ମାନସରେ ତାଙ୍କର ସ୍ମୃତି ଚିର ଅମଳିନ ରହିବ ଓ ଆଗାମୀ ପାଢ଼ିକୁ ଦିଗ୍‌ଦର୍ଶନ ଦେବ ।

**ନିରଞ୍ଜନ ପଟ୍ଟନାୟକ**
ଶିଳ୍ପ ମନ୍ତ୍ରୀ

*

ଡକ୍ଟର ରଥ ଏକାଧାରରେ ଜଣେ ପ୍ରବୀଣ ରାଜନୀତିଜ୍ଞ, ନିଃସ୍ୱାର୍ଥପର ସମାଜସେବୀ, ନିଷ୍ଠାପର ସ୍ୱାଧୀନତା ସଂଗ୍ରାମୀ ଭାବରେ ସୁପରିଚିତ । ମରୁଡ଼ି ପ୍ରପୀଡ଼ିତ ତଥା ପ୍ରାକୃତିକ ବିପର୍ଯ୍ୟୟଗ୍ରସ୍ତ ଲୋକମାନଙ୍କୁ ସେବା ଓ ଆର୍ଥିକ ସହାୟତା ପ୍ରଦାନ କ୍ଷେତ୍ରରେ ସେ ଯେଉଁ ଦୃଷ୍ଟାନ୍ତ ଦେଇଯାଇଛନ୍ତି, ତାହା ଏ ଯୁଗରେ ବିରଳ । ରାଜ୍ୟ ତଥା ଜାତୀୟ ସ୍ତରରେ ସୁନାମ ଅର୍ଜନ କରି ସେ ବହୁ ସମ୍ମାନର ଅଧିକାରୀ ହୋଇପାରିଥିଲେ ।

**ରାମଚନ୍ଦ୍ର ଉଲ୍କା**
କଲ୍ୟାଣ ମନ୍ତ୍ରୀ

*

ଡଃ ରଥ ଓଡ଼ିଆ ଜାତି ଓ ଭାଷା ପାଇଁ ଅବିରତ ସଂଗ୍ରାମ କରି ଯେଉଁ ଅନନ୍ୟ ଦିଗ୍‌ଦର୍ଶନ ଦେଇଯାଇଛନ୍ତି ତାହା ଆମ ପାଇଁ ପ୍ରେରଣାର ଉତ୍ସ । ଲୋକସେବକ ମଣ୍ଡଳର ଆଜୀବନ ସଭ୍ୟ ଭାବରେ ପରୋପକାର ଓ ଦୀନ ଦରିଦ୍ରଙ୍କ ସେବାକୁ ସେ ନିଜ ଜୀବନର ବ୍ରତ ବୋଲି ଧରିନେଇଥିଲେ । ତାଙ୍କର କର୍ମମୁଖର ଜୀବନରେ ନିଚ୍ଛକ ଓ ସତ୍ୟ ସମ୍ବାଦ ପରିବେଷଣ ଦ୍ୱାରା ସେ ଏକ ଭିନ୍ନ ଧରଣର ସାମ୍ବାଦିକତା ସୃଷ୍ଟି କରିଯାଇଛନ୍ତି । ଏହି ପ୍ରଜ୍ଞା ପୁରୁଷଙ୍କ ବିୟୋଗରେ କେବଳ ଓଡ଼ିଶା ନାହିଁ, ସମଗ୍ର ଭାରତବର୍ଷ ଜଣେ ଉତ୍ସର୍ଗୀକୃତ ଦେଶସେବକଙ୍କୁ ହରାଇଲା ।

**ଭୁପିନ୍ଦର ସିଂହ**
ସଂସ୍କୃତି ମନ୍ତ୍ରୀ

*

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଆମାନଙ୍କ ସ୍ୱାର୍ଥ ଲାଗି ଅବିଶ୍ରାନ୍ତ ସଂଗ୍ରାମ ବିଶେଷ କରି ପ୍ରାକୃତିକ ବିପତ୍ତି ବେଳେ ଦୁର୍ଗତ ଲୋକଙ୍କ ନିକଟରେ ରିଲିଫ ସାମଗ୍ରୀ ପହଞ୍ଚାଇବାରେ ତାଙ୍କର ଭୂମିକା ସମସ୍ତଙ୍କ ପାଇଁ ସ୍ମରଣୀୟ ହୋଇ ରହିବ । ତାଙ୍କର ମୃତ୍ୟୁରେ ସମାଜ ସେବା କ୍ଷେତ୍ରରେ ଏକ ଅପୂରଣୀୟ କ୍ଷତି ଘଟିଲା ।

**ଦୁର୍ଗାଶଙ୍କର ପଟ୍ଟନାୟକ**
ଶ୍ରମମନ୍ତ୍ରୀ

*

ଡଃ ରଥ ତାଙ୍କ ଜୀବନକାଳ ମଧ୍ୟରେ ସାମ୍ବାଦିକତା ବ୍ୟତୀତ ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ, ଆଧ୍ୟାତ୍ମିକ, ସମାଜସେବା ଆଦି ବିଭିନ୍ନ କ୍ଷେତ୍ରରେ ନିଜକୁ ସମ୍ପୃକ୍ତ କରିପାରିଥିଲେ । ସେ ଓଡ଼ିଶା ଓ ଓଡ଼ିଆମାନଙ୍କ ସ୍ୱାର୍ଥଲାଗି ଅବିଶ୍ରାନ୍ତ ସଂଗ୍ରାମ କରିଥିଲେ । ତାଙ୍କ ମୃତ୍ୟୁରେ ଓଡ଼ିଶା ଜଣେ ବିରଳ ବ୍ୟକ୍ତିତ୍ୱକୁ ହରାଇଲା ।

**କାହ୍ନୁଚରଣ ଲେଙ୍କା**
ପରିବହନ ମନ୍ତ୍ରୀ

*

ଚଳନ୍ତି ଜ୍ଞାନକୋଷ ଭାବରେ ପରିଚିତ ଡଃ ରଥଙ୍କ ବିୟୋଗରେ ଗୋପବନ୍ଧୁ ଓ ସତ୍ୟବାଦୀ ଯୁଗର ଶେଷ ଆଲୋକ ଶିଖା ଲିଭିଗଲା । ଦୀର୍ଘକାଳଧରି ଜଣେ ସଂସ୍କୃତି ସଂପନ୍ନ ସଂପାଦକଙ୍କ ତିରୋଧାନରେ ଗଣତନ୍ତ୍ରର ଚତୁର୍ଥ-ସ୍ତମ୍ଭର ଅପୂରଣୀୟ କ୍ଷତି ସାଧନ ହୋଇଛି ।

**ଭାଗବତ ପ୍ରସାଦ ମହାନ୍ତି**
ଉଚ୍ଚଶିକ୍ଷା ମନ୍ତ୍ରୀ

*

ସ୍ୱର୍ଗତ ରଥ ପ୍ରଜ୍ଞା ଓ ପ୍ରତିଭାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଜୀବିତାବସ୍ଥାରେ ଡଃ ରଥ ଶତାବ୍ଦୀର ଇତିହାସ ଓ ମୃତ୍ୟୁପରେ କିମ୍ବଦନ୍ତୀ ହେଲେ । ସେ ଏକାଧାରରେ ନିଃସ୍ୱାର୍ଥପର ସମାଜସେବୀ, ନିର୍ଭୀକ ସାମ୍ବାଦିକ, ବିଶିଷ୍ଟ ରାଜନୀତିଜ୍ଞ ଓ ସଂସ୍କୃତି ସଂପନ୍ନ ବ୍ୟକ୍ତି ଥିଲେ । ତାଙ୍କ ବିୟୋଗ ଫଳରେ ଏକ ଯୁଗର ଅବସାନ ହେଲା ।

**ହରିହର ସ୍ୱାଇଁ**
ପୂର୍ତ୍ତମନ୍ତ୍ରୀ

*

ନିଃସ୍ୱାର୍ଥପର ସେବାରେ ଡଃ ରଥ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ସମାଜର ଦୁଃଖ, ଅସହାୟ ଶ୍ରେଣୀର ଲୋକମାନଙ୍କ କଲ୍ୟାଣ ଲାଗି ତାଙ୍କର ଅଶେଷ ଅବଦାନ ନିମନ୍ତେ ସେ ଚିରସ୍ମରଣୀୟ ହୋଇ ରହିବେ ।

**କିଶୋର ଚନ୍ଦ୍ର ପଟେଲ**
ଜଙ୍ଗଲ ବିଭାଗ ମନ୍ତ୍ରୀ

*

ପୃଥିବୀର ବୋଧେ ଏକମାତ୍ର ବ୍ୟକ୍ତି ଯେ କି ଦୀର୍ଘ ୭୪ ବର୍ଷକାଳ ସମ୍ବାଦପତ୍ରର ମୁଖ୍ୟ ଭାବରେ ରହି ବ୍ରିଟିଶ ସରକାରଙ୍କ ଠାରୁ ଆରମ୍ଭ କରି ସ୍ୱାଧୀନୋତ୍ତର ଭାରତର ସ୍ୱଦେଶୀ ଶାସକମାନଙ୍କ ପ୍ରଭାବକୁ ଭ୍ରୂକ୍ଷେପ ନକରି ଦୁର୍ନୀତି, ଶୋଷଣ ଓ ଅତ୍ୟାଚାରକୁ ନିର୍ଭୟରେ ପ୍ରକାଶ କରି ସାମ୍ବାଦିକତା କ୍ଷେତ୍ରରେ ଏକ ଉଜ୍ଜ୍ୱଳ ପରମ୍ପରା ସୃଷ୍ଟି କରିପାରିଥିଲେ । ଓଡ଼ିଆମାନଙ୍କ ସ୍ୱାର୍ଥ ଲାଗି ଅବିଶ୍ରାନ୍ତ ଚେଷ୍ଟା, ମରୁଡ଼ି, ବନ୍ୟା ବେଳେ ଅକୁଣ୍ଠିତ ସାହାଯ୍ୟ ଥିଲା ତାଙ୍କ ଜୀବନର ବ୍ରତ ।

**ହବିବୁଲ୍ଲା ଖାଁ**
ଖାଦ୍ୟ, ଯୋଗାଣ ମନ୍ତ୍ରୀ

*

ଡଃ ରାଧାନାଥ ରଥ ଦୀର୍ଘ ୭୫ ବର୍ଷ ନିର୍ଭୀକ ସାମ୍ବାଦିକତା କରି ବିଶ୍ୱ ଦରବାରରେ ନିଜ ପ୍ରତିଭାର ପ୍ରତିଷ୍ଠା କରିଥିଲେ । ସେ କେବଳ ବରିଷ୍ଠ ସଂପାଦକ ନଥିଲେ, ଏକାଧାରରେ ବିଚକ୍ଷଣ ରାଜନୀତିଜ୍ଞ, ପଣ୍ଡିତ, ବାଗ୍ମୀ, ସ୍ୱାଧୀନତା ସଂଗ୍ରାମୀ ଥିଲେ । ଶୋଷଣ, ଅତ୍ୟାଚାର ଓ ଦୁର୍ନୀତି ବିରୋଧରେ ସ୍ୱରଉତ୍ତୋଳନ କରି ଡଃ ରଥ ନିର୍ଭୀକତାର ପରିଚୟ ଦେଇଛନ୍ତି ।

**ନିତ୍ୟାନନ୍ଦ ମଲ୍ଲିକ୍**
ସୂଚନା ଓ ଲୋକ ସଂପର୍କ
ରାଷ୍ଟ୍ରମନ୍ତ୍ରୀ

*

ସ୍ୱାଧୀନତା ସଂଗ୍ରାମଠାରୁ ଆରମ୍ଭ କରି ରାଷ୍ଟ୍ର ନିର୍ମାଣ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ସେ ତାଙ୍କର ମହତ୍ତ୍ୱର ଯୋଗଦାନ କରିଯାଇଛନ୍ତି । ସେ ନିଜେ ଥିଲେ ନିଜର ବିଶେଷଣ । ସାମ୍ବାଦିକତା ଜଗତର ଭୀଷ୍ମ ପିତାମହ । ଏହି ମହାନ ଜନସେବୀଙ୍କର ବିୟୋଗରେ ସାଧାରଣ ଜୀବନରେ ଏକ ବିରାଟ ଶୂନ୍ୟତା ସୃଷ୍ଟି ହେଲା ।

**ନାଗାର୍ଜୁନ ପ୍ରଧାନ**
ବାଣିଜ୍ୟ ରାଷ୍ଟ୍ରମନ୍ତ୍ରୀ



# ଏକତା : ଦେଶର ସ୍ଥିତି ଓ ଶକ୍ତିର ମୂଳମନ୍ତ୍ର

ଶ୍ରୀ କେ.ଆର. ନାରାୟଣନ୍

ସାଧାରଣତନ୍ତ୍ର ଦିବସ ହେଉଛି ଆମ୍ଭମାନଙ୍କର ଯେ କୌଣସି ରାଷ୍ଟ୍ରୀୟ ଦିବସଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ।ଆମ ଦେଶର ଇତିହାସରେ ଏକ ନିର୍ଦ୍ଦିଷ୍ଟ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ଏହା ହେଉଛି ଏକ ସାମ୍ବତ୍ସରିକ ଉତ୍ସବ । ବିଗତ ୧୯୩୦ ମସିହା ଜାନୁଆରୀ ମାସର ଏହି ଦିନରେ ରାବି ନଦୀ କୂଳରେ ଭାରତୀୟ ଜାତୀୟ କଂଗ୍ରେସର ବୈଠକ ଅନୁଷ୍ଠିତ ହୋଇ ସଂପୂର୍ଣ୍ଣ ସ୍ୱରାଜ ଭାରତର ଲକ୍ଷ୍ୟ ବୋଲି ଘୋଷଣା କରାଯାଇଥିଲା । ଅନ୍ୟ ଦେଶର ଜନସାଧାରଣଙ୍କ ଭଳି ପ୍ରତ୍ୟେକ ଭାରତୀୟଙ୍କର ସ୍ୱାଧୀନତା ପ୍ରାପ୍ତି ଥିଲା ସେମାନଙ୍କର ନିଜ ଅଧିକାରଭୁକ୍ତ ବିଷୟ । ଯଦି କୌଣସି ସରକାରକୁ ଜନସାଧାରଣଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାରରୁ ବଂଚିତ କରି ସେମାନଙ୍କ ଉପରେ ଦମନଲୀଳା ଚଳାଏ ତେବେ ସେଭଳି ସରକାର ପରିବର୍ତ୍ତନ କରି ଦେବା କିମ୍ବା ସଂପୂର୍ଣ୍ଣ ଉଚ୍ଛେଦ କରିଦେବା ଲାଗି ଜନସାଧାରଣଙ୍କର ଅଧିକାର ରହିଛି । ୧୯୫୦ ମସିହାର ଠିକ୍ ଏହି ଦିନରେ ଆମ ଦେଶରେ ସମ୍ବିଧାନ ଅନୁଯାୟୀ ଶାସନ କାର୍ଯ୍ୟ ଆରମ୍ଭ ହେଲା । ଆମ ଆଗରେ ଯେତେସବୁ ଲକ୍ଷ୍ୟ ସ୍ଥିରୀକୃତ ହୋଇଥିଲା, ସେଗୁଡ଼ିକ ମଧ୍ୟରେ ସର୍ବପ୍ରଧାନ ହେଉଛି ଗୋଟିଏ ରାଷ୍ଟ୍ର ଓ ଜାତି ହିସାବରେ ଐକ୍ୟ ଏବଂ ସମାନତା ଉପରେ ପର୍ଯ୍ୟବସିତ ଏକ ସାମାଜିକ ବ୍ୟବସ୍ଥା ଆଡ଼କୁ ଆମ୍ଭମାନଙ୍କର ଜୟଯାତ୍ରା ।

ଉପନିଷଦରେ ବର୍ଣ୍ଣିତ ''ବସୁଧୈବ କୁଟୁମ୍ବକମ୍'' ବା ସମଗ୍ର ବିଶ୍ୱ ଗୋଟିଏ ପରିବାର ସଦୃଶ ବିଚାରଧାରାଠାରୁ ଆରମ୍ଭ କରି ଆମ୍ଭମାନଙ୍କର ସ୍ୱାଧୀନତା ସଂଗ୍ରାମ, ରାଷ୍ଟ୍ର ଗଠନ ଓ ବିଶ୍ୱସ୍ତରୀୟ ସହଯୋଗିତା ଭଳି ଐକ୍ୟ ରକ୍ଷାକାରୀ ଚିନ୍ତାଧାରାରେ ଭାରତ ସର୍ବଦା କାର୍ଯ୍ୟ କରିଆସିଛି । ଏକତା ରକ୍ଷା ପାଇଁ ଏହି ଆହ୍ୱାନ ଆମ ଦେଶର ଦାର୍ଶନିକ ଓ ମାନବିକ ବିଚାରଧାରାର ବାସ୍ତବ ପ୍ରତିଫଳନ । ଆମର ବ୍ୟାପକ ସାମାଜିକ ବିବିଧତା ମଧ୍ୟରେ ଏହା ମଧ୍ୟ ହେଉଛି ଏକ ଆହ୍ୱାନ । ଆମେ ଭଲଭାବେ ଜାଣୁ, ବିବିଧତା ମଧ୍ୟରେ ଏହି ଏକତା ଆମ ଦେଶର ସ୍ଥିତି ଓ ଶକ୍ତିର ମୂଳମନ୍ତ୍ର । ଆମ ଦେଶର ବହୁ ଯୁଗର ପୁରାତନ ସଂସ୍କୃତି ଓ ସହନଶୀଳତାର ସୁଦୀର୍ଘ ପରମ୍ପରାର ଏହା ହେଉଛି ମୌଳିକ ନିର୍ଯ୍ୟାସ । ଆମ ଲୋକମାନଙ୍କ ମଧ୍ୟରେ ଯେଉଁ ସାମାଜିକ ଓ ଅର୍ଥନୈତିକ ପ୍ରତିବନ୍ଧକ ଗଢ଼ି ଉଠିଛି, ଏହା ତାହାର ନିଚ୍ଛକ ପ୍ରତିଫଳନ । ଆଉ ମଧ୍ୟ ଆମର ସକ୍ରିୟ ଗଣତାନ୍ତ୍ରିକ ବ୍ୟବସ୍ଥା ଦେଶର ଏକତାକୁ ଅପ୍ରତିହତ କରିପାରିଛି । ଏହା ସତ୍ତ୍ୱେ ପରସ୍ପର ମଧ୍ୟରେ କଳହ ସୃଷ୍ଟି ହେଉଛି । ମତ ପାର୍ଥକ୍ୟ ଓ କଳହ ମଧ୍ୟରେ ଆମ୍ଭେମାନେ ଆମ ଦେଶର ଐକ୍ୟ, ଅଖଣ୍ଡତା ଓ ନିରାପତ୍ତାକୁ ସୁଦୃଢ଼ କରିବା ଭଳି ଗୁରୁତ୍ୱପୂର୍ଣ୍ଣ ବିଷୟ ଭୁଲିଯିବା ଉଚିତ ହେବ ନାହିଁ । ମହାଭାରତର ଶାନ୍ତି ପର୍ବରେ ଭୀଷ୍ମ ଯେଉଁ ମହତ୍ ବାଣୀ ଶୁଣାଇଥିଲେ ତାହା ଆମ୍ଭମାନଙ୍କର ଗୁରୁତ୍ୱପୂର୍ଣ୍ଣ ତଥା ପ୍ରଣିଧାନର ବିଷୟ ହେବା ଆବଶ୍ୟକ । ଆମ ଦେଶର ନେତୃବୃନ୍ଦ ଦେଶର ସାମଗ୍ରିକ ବିକାଶ ପାଇଁ ସମ୍ମିଳିତ ଉଦ୍ୟମ କରିବା ଆବଶ୍ୟକ । ଅନ୍ୟଥା ସେମାନଙ୍କ ମଧ୍ୟରେ ଥିବା ମତପାର୍ଥକ୍ୟ ପରସ୍ପର ବିରୋଧୀ ଅନେକ ଗୋଷ୍ଠୀ ସୃଷ୍ଟି କରିବାରେ ସହାୟକ ହେବ । ଏହା ଗଣତନ୍ତ୍ରିକ ପଦ୍ଧତି ଉପରେ ପ୍ରତିକୂଳ ପ୍ରଭାବ ସୃଷ୍ଟି କରିବ । ଆଉ ମଧ୍ୟ ଏହାର ପରିଣାମ ବିଧ୍ୱଂସକାରୀ ହେବ । ରାଜନୈତିକ, ସାମାଜିକ ତଥା ଅର୍ଥନୈତିକ ବିକାଶର ସମ୍ମିଳିତ ପରିଣତି ହେଉଛି ଆମର ରାଷ୍ଟ୍ରୀୟ ଏକତା । ଦେଶର ସାମଗ୍ରିକ ଶାସନ ବ୍ୟବସ୍ଥାରେ ନିରପେକ୍ଷତା ଓ ନ୍ୟାୟ ପ୍ରଦାନ ଏକାନ୍ତ ଆବଶ୍ୟକ । ସରକାର ଲୋକମାନଙ୍କ ପାଇଁ କାର୍ଯ୍ୟ କରିବା ସହିତ ସେମାନଙ୍କର ପରିବର୍ତ୍ତିତ ଅଭିଳାଷଗୁଡ଼ିକର ପରିପୂରଣ କରିବା ବାଞ୍ଛନୀୟ । ଏଦିଗରେ କେତେକ ଉଲ୍ଲେଖନୀୟ ସଫଳତା ଆମ ଦୃଷ୍ଟିକୁ ଆସିଛି । ସ୍ୱାଧୀନତା ପ୍ରାପ୍ତି ସମୟରେ ଆମ ଦେଶର କୃଷି ଓ ଔଦ୍ୟୋଗିକ ବିକାଶର ସ୍ତର ନିମ୍ନଭାଗରେ ଥିଲା । ଆଠଟି ପଞ୍ଚବାର୍ଷିକ ଯୋଜନା ଓ ଛଅ ବର୍ଷର ଆର୍ଥିକ ସୁଧାର କାର୍ଯ୍ୟକ୍ରମ ଯୋଗୁଁ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ସମୁଚିତ ଉପଯୋଗ ବଳରେ ଅର୍ଥନୈତିକ ବିକାଶ ପ୍ରକ୍ରିୟା ଅଧିକ ତ୍ୱରାନ୍ୱିତ ହୋଇଛି । ସବୁ ଦିଗରୁ ଆମ ଦେଶ ବିକାଶ ଦିଗରେ ଅଗ୍ରଗତି କରିଛି । ମନ୍ଥର ଗତି ହେଲେ ମଧ୍ୟ ଆମର ଅର୍ଥନୀତିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଦେଖାଦେଇଛି । ଜନସାଧାରଣଙ୍କ ପ୍ରକୃତ ଆୟ ବୃଦ୍ଧି ହେବା ସହ ଜୀବନକାଳ ଦ୍ୱିଗୁଣିତ ହୋଇଛି । ଦାରିଦ୍ର୍ୟ ହ୍ରାସ ପାଇଛି । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳରେ ଅର୍ଥନୈତିକ ବିକାଶ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇ ବାର୍ଷିକ ଶତକଡ଼ା ୬ ଦଶମିକ ୫ ଭାଗ ବିକାଶ ହାର ସମ୍ଭବ ହୋଇପାରିଛି । ଏହି ହାର ବିଗତ ଯେ କୌଣସି ପଞ୍ଚବାର୍ଷିକ ଯୋଜନା ଅବଧି ଅପେକ୍ଷା ଅଧିକ । ପୂର୍ବ ଏସିଆରେ ଥିବା ଆମର ପଡ଼ୋଶୀ ରାଷ୍ଟ୍ରଗୁଡ଼ିକର ଅଭୂତପୂର୍ବ ବିତ୍ତୀୟ ଓ ଅର୍ଥନୈତିକ ଅସୁବିଧା

ସତ୍ତ୍ୱେ ଆମ ଦେଶର ଅର୍ଥନୀତି ସୁମାର୍ଗରେ ଗତିକରି ଉଲ୍ଲେଖନୀୟ ସଫଳତା ପ୍ରଦର୍ଶନ କରିଛି । ବୈଦେଶିକ କ୍ଷେତ୍ରରେ ସ୍ଥିତି ସ୍ଥାପକତା ଅନୁସରଣ କରାଯାଉଛି । ନିଜ ଦେଶ କ୍ଷେତ୍ରରେ ଆର୍ଥିକ ଦିଙ୍ଗତା ଏବଂ ଅର୍ଥନୈତିକ ସୁଧାର କାର୍ଯ୍ୟକ୍ରମ ଯୋଗୁଁ ହିଁ ଏହା ସମ୍ଭବ ହୋଇପାରିଛି ।

ସବୁଜ ବିପ୍ଳବ ସଂଗଠିତ ହୋଇଥିବା ସତ୍ତ୍ୱେ ଆମ ଦେଶର ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ କ୍ଷୁଧା ଓ ଦୃଷ୍ଟିହୀନତା ତେବେ ବି ରହିଛି । ତେଣୁ ସବୁଜ ବିପ୍ଳବ ପରିସରର ବାହାରେ ଆଉ ଏକ ପରିପୁଷ୍ଟି ବିପ୍ଳବ ସୃଷ୍ଟିର ଆବଶ୍ୟକତା ରହିଛି । ଦେଶର ଗରିବ ଜନସାଧାରଣ ଏବଂ ବିଶେଷକରି ଶିଶୁ ଓ ମହିଳାମାନଙ୍କର ଖାଦ୍ୟ ଓ ପରିପୁଷ୍ଟି ଜନିତ ଆବଶ୍ୟକତା ପୂରଣ ଲାଗି ପଦକ୍ଷେପ ଗ୍ରହଣର ଜରୁରୀ ଆବଶ୍ୟକତା ରହିଛି । ଆମ ସାଧାରଣତନ୍ତ୍ରର ଏହି ସାମ୍ବତ୍ସରିକ ଉତ୍ସବରେ ବହୁଦିନରୁ ଆରମ୍ଭ କରାଯାଇଥିବା ଏବଂ ଏଯାବତ୍ ସଂପୂର୍ଣ୍ଣ ହୋଇନଥିବା ଭୂସଂସ୍କାର ଏବଂ ସବୁଜ ବିପ୍ଳବରୁ ସଫଳ ଲାଭ କରିପାରି ନଥିବା ଭୂମିହୀନ ଗରିବ ଲୋକ ଓ ଓ କ୍ଷୁଦ୍ର ଚାଷୀମାନଙ୍କୁ ସ୍ୱଚ୍ଛଳ କରାଇବା ଲାଗି ଆମେମାନେ ପ୍ରତିଜ୍ଞାବଦ୍ଧ ହେବା ଆବଶ୍ୟକ । ଦେଶର ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଓ ଅସ୍ଥିରତା ପରିଲକ୍ଷିତ ହୋଇଛି । ଜାତିଗତ ସଂଘର୍ଷ ଓ ଧନଲାଭ ପାଇଁ ହିଂସାତ୍ମକ କାର୍ଯ୍ୟ ଆଦି ଜମି ଆବଂଟନ ଜନିତ ସାମଗ୍ରିକ ଅନ୍ୟାୟ ଯୋଗୁ ଦେଖାଦେଇଛି । ଏହା କ୍ରାନ୍ତି ଆଣିବା ଦିଗରେ ବାଧାସୃଷ୍ଟି କରୁଛି । ଭୂସଂସ୍କାର କାର୍ଯ୍ୟକ୍ରମ ଏଥିଯୋଗୁଁ ବାଧାପ୍ରାପ୍ତ ହେଉଛି। ଆଉମଧ ପ୍ରଗତିଶୀଳ ଆଇନ ବଳରେ ଗରିବ ଲୋକମାନଙ୍କୁ ଯେଉଁ ସୁବିଧା ପ୍ରଦାନ କରାଯାଇଥିଲା ତାହା ସେମାନଙ୍କଠାରୁ ହାତଛଡ଼ା ହୋଇଯାଉଛି ।

ଲୋକମାନେ ଉତ୍ତମ କାର୍ଯ୍ୟ ଓ ଯାହାକିଛି ସଫଳତା ହାସଲ କରାଯାଉଛି ତାହାକୁ ସମାଲୋଚନା କରି ସାଧାରଣତଃ ଆନନ୍ଦ ଅନୁଭବ କରିଥାନ୍ତି । ଏହାକୁ ହୁଏତ୍ ସଂପୂର୍ଣ୍ଣ ନାସ୍ତିବାଚକ ବୋଲି କୁହାଯାଇ ପାରିବ ନାହିଁ, କିନ୍ତୁ ଏଭଳି ଏକ ଅବସରରେ ହାସଲ କରାଯାଇଥିବା ସଫଳତା ଉପରେ ଆମେମାନେ ଉଲ୍ଲସିତ ହୋଇ ପାରିବା । ଏଥି ସହିତ ଯାହାକିଛି ଅସଫଳତା ଓ ଦୋଷ ଦୁର୍ବଳତା ରହିଛି ସେଗୁଡ଼ିକର ମଧ୍ୟ ସମ୍ମୁଖୀନ ହୋଇପାରିବା । ପଚାଶ ବର୍ଷର ସ୍ୱାଧୀନତା ପରେ ମଧ୍ୟ ଦେଶରେ ଏତେ ସଂଖ୍ୟାରେ ଜନସାଧାରଣ ଦାରିଦ୍ର୍ୟ ସୀମାରେଖା ତଳେ କାହିଁକି ରହିଛନ୍ତି ବୋଲି ହୁଏତ ଲୋକମାନେ ଆଲୋଚନା କରୁଥିବାର ଶୁଣାଯାଇଥାଏ । ସମାଜର କେତେକ ସ୍ତରର ଜନସାଧାରଣ ପ୍ରାଚୁର୍ଯ୍ୟ ମଧ୍ୟରେ ରହି ଅବହେଳା ତଥା ଲୋକ ଦେଖାଣିଆ ଜୀବନ ନିର୍ବାହ କରୁଛନ୍ତି । ବାସ୍ତବ ପକ୍ଷରେ ଦେଖିବାକୁ ଗଲେ ଜୀବନ ନିର୍ବାହ ପ୍ରକ୍ରିୟା ମଧ୍ୟରେ ନିରାଡ଼ମ୍ବର ଶବ୍ଦଟି ଆଉ ଦେଖାଯାଉନାହିଁ । ସାକ୍ଷରତା ବିଷୟ ଦେଖିଲେ ଦର୍ଶନ, ପାଣ୍ଡିତ୍ୟ ଓ ବୁଦ୍ଧିମତ୍ତା ସଂପନ୍ନ ଏହି ବିରାଟ ରାଷ୍ଟ୍ରରେ ବିଶ୍ୱର ଅଧିକାଂଶ ଲୋକ ନିରକ୍ଷର ଥିବା ଆମ ପାଇଁ ଲଜ୍ଜାଜନକ ବିଷୟ ନୁହେଁ କି ?

ଏହି ସବୁ ବିରୋଧାଭାସର ଉତ୍ତର ପାଇବାକୁ ହେଲେ ଆମେମାନେ ସମାଜ ଆଡ଼କୁ ଅନ୍ତର୍ଦୃଷ୍ଟି ନିକ୍ଷେପ କରିବାକୁ ହେବ । ଆମର ସମାଜ ଲମ୍ବ ତଥା ସମାନ୍ତରାଳ ଭାବରେ ବହୁଧା ବିଭକ୍ତ । ଆର୍ଥିକ ବିକାଶ, ପ୍ରଯୁକ୍ତି ବିଦ୍ୟାଗତ ପରିବର୍ତ୍ତନ ଓ ସାମାଜିକ ସୁଧାର ଆଦି କାର୍ଯ୍ୟକ୍ରମ ଏହି ଆଭ୍ୟନ୍ତରୀଣ ପ୍ରାଚୀରଗୁଡ଼ିକୁ ଏପର୍ଯ୍ୟନ୍ତ ଦୂର କରିପାରିନାହିଁ । ଯଦିଓ ଏସବୁ ବାଧା ଓ ପ୍ରତିବନ୍ଧକ ଉଲ୍ଲେଖନୀୟଭାବେ ହ୍ରାସ ପାଇଛି, ତଥାପି ବିକାଶର ସୁଫଳ ଗୋଟିଏ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ଯାଇପାରିନାହିଁ। ପରିଣାମ ସ୍ୱରୂପ, ଅସମାନ ବିକାଶ, ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟର ସ୍ଥିତି, ପରିବର୍ତ୍ତନ ଓ ପ୍ରବାହରହିତ ପରିସ୍ଥିତି ଭଳି ବିରୋଧାଭାସ ଏକା ସାଥିରେ ଦୃଶ୍ୟମାନ ହେଉଛି । ଏସବୁ ଭୟଙ୍କର ପରସ୍ପର ବିରୋଧୀ ବିଚାରଧାରା ଓ ବୈଷମ୍ୟକୁ ଆମେ କିପରି ଅନିର୍ଦ୍ଦିଷ୍ଟ କାଳପାଇଁ ସହ୍ୟ କରିପାରିବା ?

ଆମ ସମାଜରେ ସାଂପ୍ରଦାୟିକତାବାଦ ଓ ଜାତିବାଦର ନିୟନ୍ତ୍ରଣ ବିହୀନ ବୃଦ୍ଧି ଲକ୍ଷ୍ୟ କରାଯାଉଛି । ଧର୍ମନିରପେକ୍ଷତାର ଆଲୋକକୁ ଏହା କୁହେଳିକାପୂର୍ଣ୍ଣ କରିଦେଉଛି । ଭ୍ରଷ୍ଟାଚାର, ହିଂସାକାଣ୍ଡ ଓ ସାମାଜିକ ଏବଂ ରାଜନୈତିକ ଅପରାଧୀକରଣ ଦେଖାଦେଇଛି । ସାମାଜିକ ସୂତ୍ର ଓ ଅଭିଳଷିତ ମୂଲ୍ୟବୋଧ ପ୍ରତି ବିପଦ ସୃଷ୍ଟି କରୁଥିବା ଏହି ମନ୍ଦ ପ୍ରକୃତିର ଲୋକମାନଙ୍କୁ ଜବତ କରିବା ଦିଗରେ ସରକାରଙ୍କର ଦାୟିତ୍ୱ ରହିଛି। ଆଉମଧ୍ୟ ଏ ଦିଗରେ ଜନସାଧାରଣଙ୍କର ନିଜର ଦାୟିତ୍ୱ ଓ ସ୍ୱତନ୍ତ୍ର ଭୂମିକା ମଧ୍ୟ ରହିଛି ।

୧୯୪୭ରେ ମହାତ୍ମା ଗାନ୍ଧୀ ଯେତେବେଳେ କଲିକତାର ସାଂପ୍ରଦାୟିକ ଦଂଗା ପାଇଁ ଅନଶନ କରିବାକୁ ନିଷ୍ପତ୍ତି ନେଲେ ସେତେବେଳେ ଜଣେ ପ୍ରମୁଖ ନେତା ଗାନ୍ଧିଜୀଙ୍କୁ ଏଭଳି ନକରିବା ପାଇଁ ପ୍ରବର୍ତ୍ତାଇବାକୁ ଉଦ୍ୟମ କରି ଏକପତ୍ର ଲେଖିଥିଲେ । ସେ ଏହି ପତ୍ରରେ ଗାନ୍ଧିଜୀଙ୍କୁ ପ୍ରଶ୍ନ କରିଥିଲେ, ''ଆପଣ କ'ଣ ଗୁଣ୍ଡାମାନଙ୍କ ବିରୋଧରେ ଅନଶନ କରିପାରିବେ ?'' ଏହାର ଉତ୍ତରରେ ଗାନ୍ଧିଜୀ କହିଥିଲେ ''ଆମମାନେହିଁ ଗୁଣ୍ଡାମାନଙ୍କୁ ତିଆରି କରିଛୁ । ଆମର ଅନୁକଂପା ଏବଂ ପରୋକ୍ଷ ସମର୍ଥନ ବିନା ଗୁଣ୍ଡାମାନଙ୍କର କୌଣସି ସ୍ଥିତି ନାହିଁ । ମୁଁ କିନ୍ତୁ ଜନସାଧାରଣଙ୍କ ହୃଦୟର ନିକଟତର ହେବାକୁ ଚାହେଁ ।'' ଏହି ପରିପ୍ରେକ୍ଷୀରେ ସାଂପ୍ରତିକ ସ୍ଥିତିରେ ଦୁର୍ନୀତି, ହିଂସା ଏବଂ ଅପରାଧମୂଳକ କାର୍ଯ୍ୟକଳାପରେ ଲିପ୍ତ ଥିବା ବ୍ୟକ୍ତି ବା ଗୋଷ୍ଠୀମାନଙ୍କଠାରୁ ନିଜକୁ ସଂପୂର୍ଣ୍ଣ ଦୂରେଇ ରଖିବା ଏବଂ ସେମାନଙ୍କୁ ଅସହଯୋଗ କରିବା ନିମନ୍ତେ ଜନସାଧାରଣଙ୍କର ଅଧିକାର, କର୍ତ୍ତବ୍ୟ ଓ ସୁଯୋଗ ମଧ୍ୟ ରହିଛି । ସେମାନେ ଏହିଭଳି ବ୍ୟକ୍ତି ଓ ଗୋଷ୍ଠୀଙ୍କୁ କେବେହେଲେ ପରୋକ୍ଷ ସମର୍ଥନ ଦେବା ବାଞ୍ଛନୀୟ ନୁହେଁ, ବରଂ ସମାଜରେ ସେମାନଙ୍କୁ ସଂପୂର୍ଣ୍ଣ ନିଃସଙ୍ଗ କରିଦେବା ଆବଶ୍ୟକ । ଏହା ସାଙ୍ଗକୁ ସରକାର ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ପରିସ୍ଥିତିରେ ଉନ୍ନତି ପରିଲକ୍ଷିତ ହେବ ।

ଏହି ପରିପ୍ରେକ୍ଷୀରେ ଆମେ ପଞ୍ଜାବ, ଆସାମ ଓ କାଶ୍ମୀରରେ ଉଗ୍ରବାଦ ବିରୁଦ୍ଧରେ କରିଥିବା ସଂଗ୍ରାମର ଅଭିଜ୍ଞତାରୁ ଶିକ୍ଷାଲାଭ କରିବା ଆବଶ୍ୟକ । ହିଂସାକାଣ୍ଡ ଏବଂ ଅସୁରକ୍ଷିତ ଅବସ୍ଥାରେ କ୍ଳାନ୍ତ ହୋଇପଡ଼ିଥିବା ସାଧାରଣ ଜନତା ମନରୁ ଭୟ ଦୂର କରି ଉଗ୍ରବାଦ ବିରୁଦ୍ଧରେ ଆମେ ସ୍ୱର ଉତ୍ତୋଳନ କରିଛୁ । ସେମାନଙ୍କ ଲାଗି ସାଧାରଣ ଜୀବନ ଯାପନ ପ୍ରବାହ ପ୍ରକ୍ରିୟା ପୁନରାୟ ଫେରାଇ ଆଣିବା ନିମନ୍ତେ ପ୍ରତିଶ୍ରୁତି ଦିଆଯାଇଥିଲା । ଏହା ସାଙ୍ଗକୁ ସେହି ରାଜ୍ୟଗୁଡ଼ିକରେ ଗଣତାନ୍ତ୍ରିକ ପଦକ୍ଷେପମାନ ମଧ୍ୟ ଗ୍ରହଣ କରାଯାଇଥିଲା । ଏହା ଏକପ୍ରକାର ସାମାଜିକ ଓ ରାଜନୈତିକ ଚିକିତ୍ସା ଭାବରେ କାର୍ଯ୍ୟ କରିଥିଲା । ଏସବୁ କ୍ଷେତ୍ରରେ ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଜନସାଧାରଣଙ୍କ ଦୃଢ଼ ମନୋବଳ ।

ହିଂସାକାଣ୍ଡ, ଦୁର୍ନୀତି, ସାଂପ୍ରଦାୟିକତା ଏବଂ ଜାତିଆଣ ପ୍ରଥାରେ ଲିପ୍ତ ଶକ୍ତିଗୁଡ଼ିକ ବିରୁଦ୍ଧରେ ଆମେ ନିଜକୁ ପ୍ରସ୍ତୁତ କରି ଆମର ସମସ୍ତ ଶକ୍ତି ନିୟୋଜିତ କରିବାକୁ ପଡ଼ିବ । ଆମକୁ ମହିଳା, ତଫସିଲଭୁକ୍ତ ଜାତି, ଉପଜାତି, ପଛୁଆବର୍ଗ ଏବଂ ସଂଖ୍ୟାଲଘୁଙ୍କର ଶକ୍ତିକୁ ମଧ୍ୟ ଏଥିରେ ସାମିଲ କରାଇବାକୁ ହେବ । ବିକାଶ ପ୍ରକ୍ରିୟାକୁ ଅଧିକ ସୁସଂହତ କରିବା ଏବଂ ଆମର ଗଣତାନ୍ତ୍ରିକ ପ୍ରକ୍ରିୟାକୁ ଅଧିକ ସୁଦୃଢ଼ କରିବା ପାଇଁ, ମହିଳାମାନଙ୍କୁ ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ସ୍ତରରେ କ୍ଷମତାଶାଳୀ କରାଇବା ହେଉଛି ଏକ ବାସ୍ତବବାଦୀ ପ୍ରାକ୍ ଆବଶ୍ୟକତା । ଦେଶରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେବ । ଏହା ହେଉଛି ସମଗ୍ର ବିଶ୍ୱରେ ସର୍ବବୃହତ ଗଣତାନ୍ତ୍ରିକ ନିର୍ବାଚନ । ଏଥିରେ ୬୦ କୋଟି ମତଦାତା ସଂପୃକ୍ତ । ଭାରତର ନିର୍ବାଚନ ଆୟୋଗଙ୍କ ସତର୍କ ଦୃଷ୍ଟିରେ ଏହି ନିର୍ବାଚନ ମୁକ୍ତ ଓ ଅବାଧ ହୋଇପାରିବ । ଦେଶର ନାଗରିକମାନେ ସେମାନଙ୍କର ସାର୍ବଭୌମ ଅଧିକାର ଯେ ସାବ୍ୟସ୍ତ କରିପାରିବେ, ଏଥିରେ ମୋର ଆଦୌ ସନ୍ଦେହ ନାହିଁ ।

ଆମେ ଆମର ସମସ୍ୟା ଏବଂ ଚିନ୍ତାକୁ ନେଇ ବ୍ୟସ୍ତ ଥିବାବେଳେ ଆମେ କେବେହେଲେ ଭୁଲିଯିବା ନାହିଁ ଯେ ଆମେ ବିଶ୍ୱରେ ବାସ କରୁଛେ । ଅନ୍ୟ ରାଷ୍ଟ୍ରଗୁଡ଼ିକର ପଡ଼ୋଶୀଭାବରେ ରହିଛେ । ଆମେ ବିଶ୍ୱରେ ଏକ ଶକ୍ତିଶାଳୀ ଏବଂ ଅନୁଭବି ଗଣତାନ୍ତ୍ରିକ ରାଷ୍ଟ୍ରର ଅଧିବାସୀ ଭାବରେ ବିବେଚିତ ହେବା ବିଷୟ ଆମ ପାଇଁ ଗୌରବର ବିଷୟ । ଭାରତ ଏଭଳି ଏକ ଦେଶ ଯାହା ଏକ ଅଗ୍ରଗାମୀ ଅର୍ଥନୈତିକ ଏବଂ ଔଦ୍ୟୋଗିକ ଶକ୍ତି ଭାବରେ ଆଗାମୀ ଏକବିଂଶ ଶତାବ୍ଦୀ ଆଡ଼କୁ ଅଗ୍ରସର ହେଉଛି । ଅତୀତରେ ଆମେ ବିଶ୍ୱକୁ ମହାନ୍ ବିଚାରଧାରା ଓ ଦାର୍ଶନିକ ଦୃଷ୍ଟିଭଂଗୀ ଦେଇଆସିଛୁ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଗୋଷ୍ଠୀ ନିରପେକ୍ଷ ନୀତି ପ୍ରଣୟନର ସୁବିଧା ଓ ସୌଭାଗ୍ୟ ଆମକୁ ମିଳିଥିଲା । ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ଆମେ ନିରବଚ୍ଛିନ୍ନ ଏବଂ ଦାୟିତ୍ୱପୂର୍ଣ୍ଣ ପ୍ରୟାସ କରିଛୁ । ସଂପ୍ରତି ବିଶ୍ୱବାସୀଙ୍କର ସହଯୋଗରେ ବିଶେଷକରି ଗୋଷ୍ଠୀ ନିରପେକ୍ଷ ଏବଂ ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ସହଯୋଗରେ ଆମେ ଏକ ସମାନ ଅଂଶୀଦାର, ନ୍ୟାୟ ଏବଂ ଶାନ୍ତିପୂର୍ଣ୍ଣ ବିଶ୍ୱ ପ୍ରତିଷ୍ଠା ପାଇଁ କାର୍ଯ୍ୟ କରୁଛୁ । ଆମେ ନିକଟତମ ପଡ଼ୋଶୀମାନଙ୍କୁ ସହଯୋଗ ଓ ବନ୍ଧୁତାର ହସ୍ତ ପ୍ରସାରଣ କରିଛୁ । ଆମର ଗନ୍ତବ୍ୟସ୍ଥଳ ଓ ସେମାନଙ୍କ ଗନ୍ତବ୍ୟସ୍ଥଳ ପରସ୍ପର ସଂପର୍କିତ । ଆମେ ବିଶ୍ୱର ସମସ୍ତ ରାଷ୍ଟ୍ର ସହିତ ବନ୍ଧୁତ୍ୱପୂର୍ଣ୍ଣ ସୁସଂପର୍କ ସ୍ଥାପନ କରିବାକୁ ଆଗ୍ରହୀ । ଶାନ୍ତି, ନିରସ୍ତ୍ରୀକରଣ ଏବଂ ବିକାଶ ସକାଶେ ଆମର ଲକ୍ଷ୍ୟ ସଂପର୍କରେ ସମସ୍ତଙ୍କୁ ପ୍ରବର୍ତ୍ତାଇବାକୁ ଆମେ ଉଦ୍ୟମ କରୁଛୁ । ସାଧାରଣତନ୍ତ୍ର ଦିବସ ପାଳନ ଅବସରରେ ଆମେ ବିଶ୍ୱର ସମସ୍ତ ରାଷ୍ଟ୍ରକୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛୁ ।

ଏହି ତ୍ରିରଂଗା ପତାକା ଆମ ସମସ୍ତଙ୍କ ଶାନ୍ତି ଓ ପ୍ରଗତି ନିମନ୍ତେ କାର୍ଯ୍ୟ କରିବା ପାଇଁ ଅନୁପ୍ରେରଣା ଦେଉ ଏହାହିଁ ମୋର ଅଭିଳାଷ ।(ପି.ଆଇ)

(ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ରାଷ୍ଟ୍ରପତି ଶ୍ରୀ କେ.ଆର. ନାରାୟଣଙ୍କ ଉଦ୍‌ବୋଧନ)

—0—

## ବୈଦେଶିକ ପୁଞ୍ଜି ବିନିଯୋଗ ଦ୍ୱାରା ଓଡ଼ିଶାର ଦ୍ରୁତ ଅର୍ଥନୈତିକ ବିକାଶ ସମ୍ଭବ ହୋଇ ପାରିବ

ବୈଦେଶିକ ପୁଞ୍ଜି ପ୍ରଦାନକାରୀ ସଂସ୍ଥାଗୁଡ଼ିକ ରାଜ୍ୟରେ ଶିଳ୍ପ, କୃଷି, ଜଳସେଚନ, ସ୍ୱାସ୍ଥ୍ୟ, ଶିକ୍ଷା, ପାନୀୟଜଳ ଏବଂ ପରିବେଶ କ୍ଷେତ୍ରରେ ପ୍ରଭୂତ ପରିବର୍ତ୍ତନ ଆଣିପାରିବ ବୋଲି ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ପ୍ରକାଶ କରିଛନ୍ତି ।

ସ୍ଥାନୀୟ ଓବରାଏ ହୋଟେଲଠାରେ 'ଡୋନର୍‌ସ ମିଟ' ରେ ଅଧ୍ୟକ୍ଷତା କରି ଶ୍ରୀ ମିଶ୍ର ସୂଚନା ଦେଇଥିଲେ ଯେ, ରାଜ୍ୟର ଖଣିଜ ସଂପଦର ସଦୁପଯୋଗ କରାଗଲେ ଓଡ଼ିଶା ଦେଶର ଏକ ଅର୍ଥନୈତିକ ଅଗ୍ରସର ରାଜ୍ୟ ଭାବରେ ମୁଣ୍ଡ ଟେକି ପାରିବ ।

ପୁଞ୍ଜିର ଅଭାବ ଆମ ରାଜ୍ୟର ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ ମୁଖ୍ୟ ପ୍ରତିବନ୍ଧକ ହୋଇଥିବାରୁ ବିକଶିତ ରାଷ୍ଟ୍ରମାନେ ଆର୍ଥିକ ଅନୁଦାନ ଯୋଗାଇ ଦେଲେ ଆମର ବିଭିନ୍ନ କ୍ଷେତ୍ରରେ ପ୍ରଗତି ସମ୍ଭବ ହେବା ସଙ୍ଗେ ସଙ୍ଗେ ଅନଗ୍ରସର ଶ୍ରେଣୀର ବିକାଶ ମଧ୍ୟ ହୋଇ ପାରିବ ବୋଲି ଶ୍ରୀ ମିଶ୍ର ପ୍ରକାଶ କରିଥିଲେ ।

ଏଥିରେ ଯୁକ୍ତରାଜ୍ୟ, ଜର୍ମାନୀ, ସୁଇଜରଲାଣ୍ଡ, ଡେନ୍‌ମାର୍କ, ନରୱେ, ସୁଇଡେନ୍, ଜାପାନ, ପ୍ରଭୃତି ଦେଶର ପ୍ରତିନିଧିମାନେ ଯୋଗ ଦେଇ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ତରଫରୁ ଉପସ୍ଥାପିତ ବିଭିନ୍ନ ପ୍ରକଳ୍ପଗୁଡ଼ିକ ବିଷୟରେ ଅବଗତ ହେବା ସଙ୍ଗେ ସଙ୍ଗେ କେଉଁ କେଉଁ କ୍ଷେତ୍ର ପାଇଁ ଆର୍ଥିକ ଅନୁଦାନ ଯୋଗାଇ ଦେବେ ତାହା ପ୍ରକାଶ କରିଥିଲେ ।



# ନେତାଜୀ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ସେଦିନ ଛୁଇଁଲା ଏଇ ଭୂଇଁ ପରେ ଛୋଟ ଛୋଟ ଦୁଇପଦ,
ସେ ଆଜି ଗୋଟିଏ ସାରା ଭାରତର କୋଟିନିଧି ସଂପଦ ।

ସେଦିନର ସେହି ସାଧକ ଅସାର ସଂସାର ବଇରାଗୀ,
ଆଜି ସେ ଦଳିତ ଜାତିହିତ ଲାଗି ସିଦ୍ଧ ଚରମ ତ୍ୟାଗୀ ।

ସେଦିନ ବିଦେଶୀ ଅଧ୍ୟାପକର ଆଗେ ଉଦ୍ଧତଯୁବା
ସେ ଆଜି ଭାରତ ଭୂଜ ଦୁଆରେ ଯୋଦ୍ଧୃ ବେଶରେ ଉଭା ।

ସେଦିନ ସ୍ୱାଗତ ସମାଷଣରେ ହୀନ ନଉକର-ସାହୀ
ଧରିଥିଲା ଯାରେ ତାହାରି ଆଜିରେ ଡାକେ ଆଜି ତ୍ରାହି ତ୍ରାହି ।

ସେଦିନ ନଗରୀ ରାଣୀ କଲିକତା ବରି ଥିଲା ଯାରେ ସ୍ୱାମୀ
ସେ ଆଜି ଦୁଃଖିନୀ ଭାରତ ମାତାର ଏକାକୀ ଅନ୍ତର୍ଯ୍ୟାମୀ ।

ସେଦିନ ପରର ପ୍ରସାଦ-ଲବ୍ଧ-ପଦ କରି ପଦାଘାତ
ରାଷ୍ଟ୍ରପତିର ଆସନ ଲୋଲୁପୀ ନାଡିକି ମାରି ସେ ନାତ ।

ଆଶ୍ରୟ ନେଲା ବର୍ମା ବନରେ ବ୍ରିଟିଶ ବୋମାଛି ତଳେ
ପ୍ରତିଶୋଧ ତାର ଆମ୍ଭବଳିର ପଣ ହୋଇ ଆଜି ଜଳେ ।

ଭାରତର ଏହି ଗାରଦ ଭିତରେ ମାରି ନପାରିଲା ଶ୍ୱାସ,
ସ୍ୱାଧୀନ ଭାରତେ ଫେରିବ ବୋଲି ଯା ଅଜ୍ଞାତ ବନବାସ ।

ଏ ଦେଶ ପୂଜ୍ୟ ନେତୃ ସମାଜେ ନ ଦେଲିଲା ସେହୁ ସ୍ଥାନ,
ଧିକ୍କାର କଲା ଶତ୍ରୁ-ଶିବିରେ କାରାବାସ-ସମ୍ମାନ ।

ଚାଳିଶ କୋଟି ଏ ଦଳିତ ଜାତିର ଦେବତା ହୋଇଛି ଆଜି,
ନେତାଜୀ ନେତାଜୀ ଡାକରେ ସତେକି ଆକାଶ ପଡୁଛି ଭାଜି ।

କାହିଁରେ ନେତାଜୀ ? 'ନେତାଜୀ'! 'ନେତାଜୀ'! ତଥାପି ପଡୁଛି ଡାକ,
ତଥାପି ନେତାଜୀ-ପାଗଳ ହୋଇଛି ଆଜି ଏ ଅବନୀ ଯାକ ।

କାହିଁରେ ନେତାଜୀ ? ବର୍ମା ସୀମାର ବନାନୀ ପଡ଼ିଚି ତୁନି
ତଥାପି ତୁହାଇ ତୁହାଇ ଉଠୁଛି 'ନେତାଜୀ', 'ନେତାଜୀ' ଧ୍ୱନି ।

ନେତାଜୀ ନେତାଜୀ ! କାହିଁରେ ନେତାଜୀ ? ଶୂନ୍ୟ ପ୍ରାସାଦ ତଳ
ତଥାପି ଘୁରୁଛି ରାଜପଥ ପରେ ଶତେକ 'ରାମେଶ୍ୱର' !

କାହିଁରେ ନେତାଜୀ ? ଭିନ୍ନ ଭାରତେ ଶୀର୍ଣ୍ଣ କି ସେ ଆବାଜ ?
ତଥାପି ଦିଲ୍ଲୀ ଦୁଆରେ 'ଧୀଲନ୍' 'ଶଘଲ' 'ଶାହାନ୍‌ବାଜ' ।

କାହିଁ ରେ ନେତାଜୀ ? ମାତା ଯାର ଆଜି ସୁପ୍ତ ସମାଧି ତଳେ,
ତଥାପି ଜଳୁଛି ଝାନସୀର ରାଣୀ ଲକ୍ଷ୍ମୀର ଦାବାନଳେ ।

ନେତାଜୀ ! ନେତାଜୀ ! କଥା ନୁହେଁ ଖାଲି ନେତାଜୀ ଗୋଟାଏ ପଣ
ଗୋଲାମ ଜାତିର ଧର୍ମ କେବଳ ଶତ୍ରୁ ସମ୍ମୁଖେ ରଣ ।

ନେତାଜୀ ! ନେତାଜୀ ! ନୁହେଁ ସେ ଶରୀରୀ ନେତାଜୀ ଗୋଟିଏ ବ୍ରତ,
ଜୀଅଁତା ମଣିଷ ମଣ୍ଡପେ ଦିଏ ମରଣର ଇଙ୍ଗିତ ।

ନେତାଜୀ ! ନେତାଜୀ ! ନୁହେଁ ରେ ସେ ନେତା, ସେତ ମହା ବଳିଦାନ
ତାହାରି ନାଲିରେ ଯାଇଛି ଚାଲି ଏ ଭାରତର ଅପମାନ ।

(କବି ୧୯୪୬ ଜାନୁଆରୀ ମାସରେ ଏହି କବିତାଟି ରଚନା କରିଥିଲେ ।

ଡି/୪, ଲେବର କଲୋନି
ୟୁନିଟ୍ - ୩, ଖାରବେଳନଗର
ଭୁବନେଶ୍ୱର - ୧



# ଆଜିର ଆହ୍ୱାନ : ସଂକଳ୍ପର ରୂପାୟନ

*ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ*

**ଆ**ଜି ଏ ଦେଶର ସାଧାରଣତନ୍ତ୍ର ୪୮ ବର୍ଷ ହୋଇଗଲା । ଆମ ଦେଶର ଦୁଇଟି ପ୍ରଧାନ ସ୍ମରଣୀୟ ଦିବସ ଇତିହାସରେ ଗୌରବମୟ ଦିବସ ରୂପେ ଅଭିହିତ । ଗୋଟିଏ ହେଉଛି ସ୍ୱାଧୀନତା ଦିବସ ଅଗଷ୍ଟ ୧୫ ଏବଂ ଅନ୍ୟଟି ହେଉଛି ସାଧାରଣତନ୍ତ୍ର ଦିବସ ଜାନୁୟାରୀ ୨୬ ତାରିଖ । ଏ ଦୁଇଟି ଦିନ ଜାତିର ସଂଗ୍ରାମର, ସଂକଳ୍ପର ସ୍ମାରକ ହୋଇ ରହିବ ଚିରଦିନ । ଯେଉଁମାନେ ଏ ଜାତି ପାଇଁ ସର୍ବସ୍ୱ ଦାନ କରିଛନ୍ତି, ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ଶହୀଦ ହୋଇଛନ୍ତି ଏବଂ ଏ ଦେଶକୁ ସ୍ୱପ୍ନ ଦେଇଛନ୍ତି, ସଂକଳ୍ପ ଦେଇଛନ୍ତି, ଏହି ଦୁଇ ଦିନରେ ଆମେ ବିଶେଷ ଭାବରେ ସେମାନଙ୍କୁ ସ୍ମରଣ କରିବା । ଯେଉଁ ସ୍ୱପ୍ନର ଭାରତବର୍ଷ ମହାତ୍ମା ଗାନ୍ଧୀ, ରବୀନ୍ଦ୍ର ନାଥ ଠାକୁର, ଶ୍ରୀ ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ କଳ୍ପନା କରିଥିଲେ, ଆଜି ସେ ସ୍ୱପ୍ନକୁ ରୂପାୟିତ କରିବା ପାଇଁ, ସେ ସଂକଳ୍ପକୁ କାର୍ଯ୍ୟକାରୀ କରିବା ପାଇଁ ଆମେ ଅଙ୍ଗୀକାରବଦ୍ଧ ହେବା ଉଚିତ । ସ୍ୱାଧୀନତା ପରେ ଏ ଦେଶ କିପରି ଭାବରେ ଶାସିତ ହେବ, ସେଥିପାଇଁ ୪୮ ବର୍ଷ ତଳେ ଜାନୁୟାରୀ ୨୬ ତାରିଖ ଦିନ ସମ୍ବିଧାନ ପ୍ରଣୀତ ହୋଇଥିଲା । ସେ ସମ୍ବିଧାନରେ ଉଲ୍ଲେଖ ଥିଲା, ଭାରତବର୍ଷ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ହେବ । ଏ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତଙ୍କର ସମାନ ଅଧିକାର ରହିବ । ସମସ୍ତେ ସମାନ ସୁବିଧା ସୁଯୋଗ ଉପଭୋଗ କରିବେ ଏବଂ ସେ ଅନୁସାରେ ଏ ଜାତିର ଉତ୍‌ଥାନ ହେବ ।

ସେଥିରେ ବିଶେଷ ଭାବରେ ଉଲ୍ଲେଖ ଥିଲା, ଭାରତବର୍ଷ ହେବ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ତା'ର ଅର୍ଥ ନୁହେଁ, ଧର୍ମର କେହି ଉପାସନା କରିବେ ନାହିଁ । କୌଣସି ଧର୍ମ ପ୍ରତି ସମ୍ମାନ ରହିବ ନାହିଁ । ଧର୍ମ ନିରପେକ୍ଷତାର ଅର୍ଥ ହେଉଛି ସର୍ବଧର୍ମ ସମଭାବ । ଏ ଭାରତ ବର୍ଷ ହେଉଛି ହିନ୍ଦୁ, ମୁସଲମାନ, ଶିଖ, ପାର୍ଶୀ, ଖ୍ରୀଷ୍ଟିୟାନମାନଙ୍କର ଦେଶ । କେବଳ ଗୋଟିଏ ଧର୍ମାବଲମ୍ବୀ ନୁହେଁ; ବହୁ ଧର୍ମ ମତାବଲମ୍ବୀ ଏ ଭାରତବର୍ଷରେ ବାସ କରୁଛନ୍ତି । ଅତି ପ୍ରାଚୀନ କାଳରେ ବେଦରେ ମଧ୍ୟ କୁହାଯାଇଥିଲା ଈଶ୍ୱର ଏକ, ରାସ୍ତା ଅନେକ । 'ଏକମ ସଦ୍ ବିପ୍ରା ବହୁଧା ବଦନ୍ତି' । ଭାରତବର୍ଷ ହେଉଛି ତା'ର ପ୍ରତୀକ । ପୃଥିବୀରେ ଗୋଟିଏ ଗୋଟିଏ ଦେଶ ଅଛି ଯେଉଁ ଦେଶ କେବଳ ଗୋଟିଏ ଧର୍ମର ରାଷ୍ଟ୍ର ବୋଲି ନିଜକୁ କହିଛନ୍ତି । କିନ୍ତୁ ପୃଥିବୀରେ ଖୁବ୍ କମ୍ ଦେଶ ଅଛନ୍ତି ଯେଉଁମାନେ ସବୁଧର୍ମକୁ ସମ୍ମାନ ଦେଇପାରନ୍ତି । ଭାରତବର୍ଷ ହେଉଛି ସେହିପରି ଏକ ଦେଶ । ଏ ଦେଶର ଅନ୍ୟତମ ଲକ୍ଷ୍ୟ ଥିଲା, ସମସ୍ତ କ୍ଷେତ୍ରରେ ଲୋକଙ୍କର ସ୍ୱାଧୀନତା ରହିବ । ସମସ୍ତ ବ୍ୟକ୍ତିଗତ ସ୍ୱାଧୀନତା ଭାରତବର୍ଷରେ ରକ୍ଷିତ ହୋଇଛି । ଯେକୌଣସି ବ୍ୟକ୍ତି ଯାହା ଚାହିଁବ କହି ପାରିବ, ଅବଶ୍ୟ ତା' ସୀମା ଭିତରେ, ସଂଯମ ଭିତରେ । ସମସ୍ତ ଅଧିକାର ସହିତ କର୍ତ୍ତବ୍ୟ ଜଡ଼ିତ ହୋଇକରି ରହିଛି । ଖାଲି ଅଧିକାର ଯଥେଷ୍ଟ ନୁହେଁ, ଆମର କର୍ତ୍ତବ୍ୟ ମଧ୍ୟ ରହିଛି ଦେଶ ମାତୃକା ପ୍ରତି, ସମାଜ ପ୍ରତି, ରାଷ୍ଟ୍ର ପ୍ରତି । ଏହା ସହିତ ଭାରତବର୍ଷ ବିଶ୍ୱରେ ଶାନ୍ତି ଆଣିବା ପାଇଁ ମୂଳରୁ ଉଦ୍ୟମ କରି ଆସିଛି ପଣ୍ଡିତ ଜବାହର ଲାଲ ନେହେରୁଙ୍କ ନେତୃତ୍ୱରେ । ଭାରତକୁ ବିଶ୍ୱଶାନ୍ତିର ଏକ ପ୍ରତୀକ ଭାବରେ ଗ୍ରହଣ କରାଯାଏ । ଏହା ସହିତ ମଧ୍ୟ ନିଜର ସୁରକ୍ଷା ପାଇଁ କେବେହେଲେ ଅବହେଳା କରିନାହିଁ । ଯେତେବେଳେ ଭାରତବର୍ଷକୁ କେହି ଶତ୍ରୁ ଆକ୍ରମଣ କରିଛି ସେତେବେଳେ ସମସ୍ତ ଶକ୍ତି ପ୍ରୟୋଗ କରି ଆମେ ତାକୁ ପ୍ରତିହତ କରିଚେ ।

ଶ୍ରୀମତୀ ଇନ୍ଦିରାଗାନ୍ଧୀ ଦେଖେଇ ଦେଇଛନ୍ତି ଯେ ଭାରତବର୍ଷକୁ କେହି ଛୁଇଁ ପାରିବେ ନାହିଁ । ଯେଉଁମାନେ ଏ ଦେଶକୁ ଆକ୍ରମଣ କରିବା ପାଇଁ ଆସିବେ ସେମାନଙ୍କୁ ଠିକଣା ଜବାବ୍ ଦିଆଯିବ । ସେ ଜବାବ୍ ଭାରତବର୍ଷ ବାରମ୍ବାର ଦେଇଛି । ସମାଜର ଅତି ନିମ୍ନ ସ୍ତରରେ ରହିଥିବା ଗରିବ ଲୋକମାନଙ୍କର ଅବସ୍ଥା ପ୍ରତି ମଧ୍ୟ ଆମକୁ ଦୃଷ୍ଟି ଦେବାକୁ ହେବ । ସ୍ୱାଧୀନତା ପୂର୍ବରୁ ସେମାନେ ଅବହେଳିତ ହୋଇ ଥିଲେ । ଏବେ ମଧ୍ୟ କୋଟି କୋଟି ଲୋକ ବଞ୍ଚିତ ଅବସ୍ଥାରେ ରହିଛନ୍ତି । ସେମାନଙ୍କୁ କିପରି ଉଠେଇବାକୁ ହେବ, ସ୍ୱାଧୀନତାର ସୁଯୋଗ ସେମାନେ କିପରି ଲାଭ କରିପାରିବେ; ଶିକ୍ଷାର କ୍ଷେତ୍ରରେ, ସ୍ୱାସ୍ଥ୍ୟର କ୍ଷେତ୍ରରେ, ସାଧାରଣ ଉନ୍ନୟନ କ୍ଷେତ୍ରରେ ସେମାନଙ୍କୁ କିପରି ଆମେ ଅଗ୍ରଗାମୀ କରାଇ ପାରିବା ସେ ଦିଗରେ ଉଦ୍ୟମ କରିବାକୁ ପଡ଼ିବ । ଯେଉଁମାନେ କୋରାପୁଟ, ବଲାଙ୍ଗୀର ଆଦି ଅଭ୍ୟନ୍ତର ଅଞ୍ଚଳରେ ବହୁତ ପଛରେ ରହିଛନ୍ତି, ସେମାନଙ୍କୁ ଉନ୍ନତ ଅଞ୍ଚଳ ସହିତ ସମକକ୍ଷ କରିବାକୁ ହେବ । ସେମାନଙ୍କ ଜୀବନଧାରଣର ମାନ ଉନ୍ନତ କରିବାକୁ ହେବ । ଦାରିଦ୍ର୍ୟର ଅଭିଶାପ ଆମକୁ ଦୂର କରିବାକୁ ହେବ । ଓଡ଼ିଶାକୁ ଭାରତବର୍ଷରେ ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ହେବ । ଆଜି ଗଣତନ୍ତ୍ର ଦିବସରେ ଆମକୁ ଏହି ସଂକଳ୍ପ କରିବାକୁ ପଡ଼ିବ । ଏ ସଂକଳ୍ପ କେବଳ ଗୋଟିଏ ରାଷ୍ଟ୍ରର ସଂକଳ୍ପ ନୁହେଁ । ଏ ହେଉଛି ଜନସାଧାରଣଙ୍କର ସଂକଳ୍ପ, ସମସ୍ତଙ୍କର ସଂକଳ୍ପ । ସାମ୍ପ୍ରଦାୟିକତା, ଜାତିବାଦ ବିରୁଦ୍ଧରେ ଏକ ରାଷ୍ଟ୍ରକୁ ଗୌରବାନ୍ୱିତ କରିବା ହେଉଛି ଆଜିର ଆହ୍ୱାନ ।

(୧୯୯୮ ଜାନୁୟାରୀ ୨୬ ସାଧାରଣତନ୍ତ୍ର ଦିବସ ଅବସରରେ ଭୁବନେଶ୍ୱର ପ୍ୟାରେଡ୍ ପଡ଼ିଆରେ ଅନୁଷ୍ଠିତ୍ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ)

# ନେତାଙ୍କୁ ପ୍ରଣାମ

ଜେନାମଣି ନରେନ୍ଦ୍ର କୁମାର

ମାନବିକ ଅଧିକାର
ସ୍ୱାଧୀନତା ଯେବେ ହୋଇପାରେ
ମୋତେ କାହିଁ ବନ୍ଧନରେ
ଛଟପଟ ହେବାକୁ ହେଉଛି
ମନେ ହୁଏ ଆକାଶରେ
ଉଡୁଥିବା ପକ୍ଷୀସମ ମୁହିଁ
ଉଡ଼ିବି ମୁଁ କ୍ଲାନ୍ତି ନାହିଁ
ଯନ୍ତ୍ରଣାର ଅବକାଶ ନାହିଁ
ଏ ସ୍ୱାଧୀନତାର ସୂତ୍ର
ରକ୍ତ ଦିଅ, ଦେବି ସ୍ୱାଧୀନତା
ରକ୍ତ ହିଁ ବଞ୍ଚାଏ କେତେ
ମୃତ୍ୟୁମୁଖୀ ଅସୁସ୍ଥ ମଣିଷେ
ମୁକ୍ତି ଓ ଜୀବନେ ମଧ୍ୟେ
ଅଛି ଯେଉଁ ଗଭୀର ସମ୍ପର୍କ
ତାହା ଦେଖ ପୁଣି ଥରେ
ସଫା କରି ମନ ନର୍ଦ୍ଦମାରେ
ଆମେ ସବୁ ବୟସର
କ୍ଲାନ୍ତିରେ ବି ଲଢୁଛୁ ସେପରି
ତୁମେ ଆସ ଯୌବନର
ଅଗ୍ରଦୂତ ଶକ୍ତି ଉତ୍ସବର ।
ଏ ଦେଶର ସ୍ୱାଧୀନତା
ଦୁଃଖୀ ଏବଂ ଦରିଦ୍ର ଲୋକର
ସେ ପାଇଁ ଲଢ଼ିଲେ ଯେତେ
ପୂଜନୀୟ ନେତାଙ୍କୁ ପ୍ରଣାମ
(ନେତାଜୀ ସୁଭାଷଚନ୍ଦ୍ର ଶତାବ୍ଦୀ ଜୟନ୍ତୀ ଉତ୍ସବର କବି ସମ୍ମିଳନୀରେ ପଠିତ)

ପିଠାପୁର, କଟକ-୭୫୩ ୦୦୧

# ବିପ୍ଳବର ଜାଗ୍ରତ ଶିଖା : ସାରଳା ଦାସ

ଡ଼କ୍ଟର ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ

**ଜଗନ୍ନାଥ ଦେଶର ଗୌରବ :**

ଜଗନ୍ନାଥ ଦେଶ ଏଇ ଓଡ଼ିଶା, ଇତିହାସରେ ବିଭିନ୍ନ କାଳରେ ଉତ୍କଳ, କଳିଙ୍ଗ, ତ୍ରିକଳିଙ୍ଗ, ଉଡ୍ରଦେଶ ଭାବେ ପରିଚିତ ଥିଲା । ଏ ଦେଶ ଯେ ବିଭିନ୍ନ କଳାର ପୀଠସ୍ଥଳୀ ଥିଲା ... ତାହାର ଅଜସ୍ର ପ୍ରମାଣ ଏହାର ବନ, ଗିରି, ମନ୍ଦିର, ଦୁର୍ଗ, ଜୀବନଯାତ୍ରା, ସାହିତ୍ୟରେ ଭରି ରହିଛି । ଏହାର ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଂଗୀତ, ଓଡ଼ିଶୀ ସ୍ଥାପତ୍ୟ, ଓଡ଼ିଶୀ ପଟ୍ଟଚିତ୍ର, ଛଉ ଓ ପାଇକ ନୃତ୍ୟ ଆଜି ଆନ୍ତର୍ଜାତିକ ଖ୍ୟାତିର ଅଧିକାରୀ । ଏହାର ଭାଷା ଓ ସାହିତ୍ୟ ବିଶେଷତଃ ପ୍ରାଚୀନ ସୃଷ୍ଟି ସମୂହ ପୃଥିବୀର ଯେ କୌଣସି ଭାଷା ସାହିତ୍ୟର ସମକକ୍ଷ ହେବାର ସ୍ପର୍ଦ୍ଧା ରଖେ ।

**ଓଡ଼ିଆ ଭାଷା :**

ଭାରତୀୟ ଭାଷା ସାମ୍ରାଜ୍ୟରେ ଓଡ଼ିଆ ଏକ ମହାନ ପୁରାତନ ଭାଷା । ତତ୍‌ବିତ୍‌ମାନେ ତ କହନ୍ତି ଓଡ଼ିଆ ସଂସ୍କୃତର ଏକ ଉପଭାଷା । ମୁନି ଭରତ ତାଙ୍କ ପ୍ରସିଦ୍ଧ ନାଟ୍ୟ ଶାସ୍ତ୍ରରେ ଉଡ୍ର ଦେଶୀ ଚରିତ୍ରମାନଙ୍କ ପାଇଁ ଉଡ୍ର ବିଭାଷାର ବ୍ୟବହାର ଲେଖି ଏ ଜାତିକି ମହାନ ପ୍ରାଚୀନତାର ଗୌରବ ଦେଇଛନ୍ତି । ଗଞ୍ଜାମ ଜଉଗଡ଼ରେ ଓ ଭୁବନେଶ୍ୱର ନିକଟସ୍ଥ ଧଉଳିରେ ମହାନ୍ ସମ୍ରାଟ ଅଶୋକଙ୍କ ଅନୁଶାସନରେ ଏ ଜାତିର ପ୍ରାଚୀନ ଭାଷାର ସଙ୍କେତ ଆକୀର୍ଣ୍ଣ ହୋଇଛି । ମହା ମେଘ ବାହନ ଖାରବେଳଙ୍କ ଖଣ୍ଡଗିରି ଓ ଉଦୟଗିରିର ଶିଳିଲିପି ଖ୍ରୀ.ପୂ. ଦ୍ୱିତୀୟ ଶତକର ଓଡ଼ିଆ ଭାଷାକୁ ବ୍ୟାଖ୍ୟାନ କରେ । ଏଭଳି ବହୁ ପ୍ରତ୍ୟକ୍ଷ ଓ ଅନେକ ପରୋକ୍ଷ ପ୍ରମାଣରୁ ଜଣାଯାଏ ଯେ ଓଡ଼ିଆ ଭାଷା ଖ୍ରୀଷ୍ଟ ଜନ୍ମର ଅନେକ ବର୍ଷ ଆଗରୁ ପ୍ରଚଳିତ ଥିଲା । ଅବଶ୍ୟ ଭିନ୍ନ ରୂପରେ । ପାଲି ପ୍ରାକୃତ ତ ଦିନେ ଓଡ଼ିଆଙ୍କ ରାଷ୍ଟ୍ରଭାଷା ଥିଲା । ଓଡ଼ିଆ ଲୋକଭାଷାରେ ଅଗଣିତ ପାଲିଭାଷାର ଶବ୍ଦ ଏବଂ ଲୋକବସତିକୁ 'ପାଲି' (ବରପାଲି, ଧଉରାପାଲି) ଭାବେ ଚିହ୍ନିତ କରିବାରେ ଏହା ପ୍ରମାଣିତ ହେଉଛି । ଆଜିର ଓଡ଼ିଆ ଭାଷା ଶାବର, ଦ୍ରାବିଡ଼, ପାଲି ଓ ଆର୍ଯ୍ୟ ଭାଷାର ଏକ ମିଶ୍ରିତ ମନୋଜ୍ଞ ସମନ୍ୱିତ ରୂପ । ଓଡ଼ିଆ ଜାତିର ଭାଗ୍ୟବିଧାତା ଶ୍ରୀ ଜଗନ୍ନାଥଙ୍କ ଠି ସେଇପରି ଏ ମହାବିନି ଭାରତୀୟ ଦର୍ଶନ ଓ ଚିନ୍ତାର ସମନ୍ୱୟ ଘଟିଚି ଏବଂ ଚକାଡ଼ୋଳାଙ୍କ ଚକା ଆଖିର ଅନୁସରଣରେ ଓଡ଼ିଆମାନେ ସେମାନଙ୍କ ଲିପିକୁ ଗୋଲଗୋଲ ଲେଖନ୍ତି (ଏଇଥି ପାଇଁ ବହୁବାର ମୁଁ ଓଡ଼ିଆରେ ଏବେ ପ୍ରଚଳିତ 'ଏ' ଓ 'ଐ' ତ୍ରିକୋଣାକାର ଲିପି ଦୁଇଟିକୁ ଅଣ ଓଡ଼ିଆ ବା ବଙ୍ଗଳା ଲିପି ବୋଲି କହୁଚି । ଯାହାକି ଊନବିଂଶ ଶତକରେ ବଙ୍ଗୀୟ ଲିପିକାରଙ୍କ କରୁଣାରୁ ଆମ ଭାଷାରେ ଅନୁପ୍ରବେଶ କରିଚି )

**ଓଡ଼ିଆର ପ୍ରାରମ୍ଭିକ ସାହିତ୍ୟ :** ଏଇ ମହାନ୍ ପ୍ରାଚୀନ ଭାଷାର ଆଧୁନିକ ଭାଷା ସାହିତ୍ୟ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ସ୍ପଷ୍ଟ ଭାବେ ଥିବାର ସ୍ୱୀକାର କରାଯାଇଛି । ଚର୍ଯ୍ୟାଗୀତିକୁ ଏହାର ଆବିଷ୍କୃତ ପ୍ରାଚୀନତମ ରୂପ ଭାବେ ଗ୍ରହଣ କରାଯାଇଛି । ଏହାର ପରେ ପରେ 'ସିସୁବେଦ' ଓ ନାଥ ସାହିତ୍ୟ ଭିତରେ ଏହାର କ୍ରମ ବିକାଶର ଚିତ୍ର ମିଳେ । ମାତ୍ର ଓଡ଼ିଆଙ୍କ ଲୋକ ସାହିତ୍ୟ ଏହାର ପ୍ରାଚୀନତାକୁ କିଭଳି ବହନ କରିଚି ତାହା ଏବେ ବି ଗବେଷଣାର ବିଷୟ ହୋଇନି । ଏହାର କୋଇଲି ଓ ଚଉତିଶା ସାହିତ୍ୟ ଲୋକ ଶିକ୍ଷା ଓ ସାରସ୍ୱତ ସୃଷ୍ଟିର ସଂତକ ଭାବେ ବିଦ୍ୟମାନ ।

ସତ କହିବାକୁ ଗଲେ, ଓଡ଼ିଶାର ସମ୍ରାଟ, ରାଜା, ରାଜପୁରୁଷମାନେ ସବୁଦିନ ବ୍ରାହ୍ମଣ ପୁରୋହିତଙ୍କ ଦ୍ୱାରା ପରିଚାଳିତ ହେଉଥିଲେ । ଶିକ୍ଷା, ସାରସ୍ୱତକଳା, ଭାଷା, ସାହିତ୍ୟରେ ବ୍ରାହ୍ମଣମାନେ ହିଁ ନେତୃତ୍ୱ ନେଉଥିଲେ ଏବଂ ସେମାନେ ବ୍ୟବହାର କରୁଥିଲେ ସଂସ୍କୃତ ଭାଷା । ଓଡ଼ିଆ ବ୍ରାହ୍ମଣ ଲେଖକମାନେ ସଂସ୍କୃତ ଭାଷାରେ ଯେଉଁ ଅପୂର୍ବ ସାରସ୍ୱତ ସୃଷ୍ଟି ଛାଡ଼ି ଯାଇଛନ୍ତି, ତାହା ଓଡ଼ିଶାକୁ ଗର୍ବିତ କରିଥାଏ । ସଂସ୍କୃତକୁ ଦେବଭାଷା ଭାବେ ଚିତ୍ରିତ ଓ ଉପସ୍ଥାପିତ କରି ସେମାନେ ରାଜକୀୟପୂର୍ଣ୍ଣ ପୃଷ୍ଠପୋଷକତା ହାସଲ କରିଥିଲେ । ଓଡ଼ିଆ କିନ୍ତୁ ଥିଲା ଏ ଦେଶର ଅଗଣିତ ମାଟି ପୁଅଙ୍କ ଭାଷା । ଓଡ଼ିଆ ଭାଷା ଏମିତି ମାଡ଼ ଖାଇ ଇତର ଅବସ୍ଥାରେ ଥିଲା ଏବଂ ଏ ଭାଷାରେ କୌଣସି ସାରସ୍ୱତ ସୃଷ୍ଟି ଥିଲା ଅପରିକଳ୍ପନୀୟ ଏବଂ ଅସ୍ପୃଶ୍ୟ । ଏମିତି ଚାଲିଲା ପଞ୍ଚଦଶ ଶତକ ଯାଏ ।

**ଓଡ଼ିଶା ତଥା ଓଡ଼ିଆର ସୁବର୍ଣ୍ଣ ଯୁଗ :**

ଓଡ଼ିଆ ଜାତି ଜଣେ ଜାତିପ୍ରାଣ ବୀରର ଅବତାର ଲାଗି ଅପେକ୍ଷା କରିଥିଲା । ସେ ଆଶା ପୂର୍ଣ୍ଣ ହେଲା ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବଙ୍କ (୧୪୩୪-୧୪୬୬) ଶାସନ୍ କାଳରେ । କପିଳେନ୍ଦ୍ରଙ୍କ ଉଡ୍ର ବାହିନୀ ଦକ୍ଷିଣରେ କାବେରୀଠୁ ଉତ୍ତରରେ ଗଙ୍ଗା, ପୂର୍ବରେ କଳିଙ୍ଗ ସାଗର

(ଆଜିର ବଙ୍ଗୋପସାଗର ନାଁଟି ଇଂରେଜମାନଙ୍କ ଦ୍ୱାରା ପ୍ରଦତ୍ତ ) ଠାରୁ ପଶ୍ଚିମରେ ବିଂଧ୍ୟାଚଳ ଯାଏ ଏକ ବିରାଟ ସାମ୍ରାଜ୍ୟ ଗଢ଼ିଥିଲା । ଧନ, ଧାନ୍ୟ, ରତ୍ନ ଭରା ଏ ବିରାଟ ସାମ୍ରାଜ୍ୟ ଶିଳ୍ପ, କଳା, ସାହିତ୍ୟରେ ଅପୂର୍ବ ଯଶଶ୍ରୀ ମଣ୍ଡିତ ହୋଇଉଠିଲା । ନିଜେ କପିଳେନ୍ଦ୍ର ଦେବ ସଂସ୍କୃତ ପରଶୁରାମ ବିଜୟ ନାଟକରେ ରାଣୀ ଚନ୍ଦ୍ରବଦନାଙ୍କ ମୁହଁରେ ସଂଗୀତାଇଲେ 'କେବଣ ମୁନି କୁମାର' ଓଡ଼ିଆ ସଂଗୀତ । ରାଜାର ସମର୍ଥନ ଓ ପୃଷ୍ଠପୋଷକତା ପାଇଲା ଗଣଭାଷା ଓଡ଼ିଆ । ଏହାଇ ସମଗ୍ର ଦୃଶ୍ୟକୁ ଆମୂଳ ଓଲଟେଇ ଦେଲା ।

ଏ ସମୟକୁ ଓଡ଼ିଶା ଇତିହାସର ସୁବର୍ଣ୍ଣ ଯୁଗ ବୋଲି କୁହାଯାଏ । ଓଡ଼ିଆମାନେ ଶିଳ୍ପ, ବାଣିଜ୍ୟ, କଳା, ସମରକୁଶଳତା, ସଂଗୀତ, ସାହିତ୍ୟ ପ୍ରଭୃତି ମଣ୍ଡିତ ସଭ୍ୟତାର ସମସ୍ତ ଧାରାରେ ସୁବର୍ଣ୍ଣ ଲିପିରେ ଲେଖିଲେ ନୂଆ ସୁବର୍ଣ୍ଣ ଇତିହାସ ।

**ସେ ଆଦିକବି :**

ଏଇ ସୁବର୍ଣ୍ଣ ଯୁଗରେ ସୁବର୍ଣ୍ଣ ଲେଖନୀ ଧରି ଅବତାର ନେଲେ ଏ ମାଟିର ମହାକବି ସାରଳା ଦାସ । ପ୍ରଥମ ଥର ପାଇଁ ସାରସ୍ୱତ ଓ ସାହିତ୍ୟ ଜଗତର ବ୍ରାହ୍ମଣ ନେତୃତ୍ୱ ପରାହତ ହେଲା ପ୍ରଳୟ ପ୍ରହାରରେ । ଯା ପୂର୍ବରୁ ଯୋଉ ସୃଷ୍ଟିସବୁ ଏ ସାହିତ୍ୟରେ ହେଉଥିଲା, ସେ ସବୁ ଏଭଳି ଶକ୍ତ ବଳିଷ୍ଠ ହୋଇପାରି ନଥିଲା । ଭାଷା ସାହିତ୍ୟ ଜଗତରେ ତେଣୁ ସାରଳା ଆଦ୍ୟ ବନ୍ଦିତ ବିପ୍ଳବୀ ଓଡ଼ିଆ କବି ଯିଏ କି ତାଙ୍କର ସମଗ୍ର ସୃଷ୍ଟିରେ ବିପ୍ଳବର ବହ୍ନି ଜାଳି ଯାଇଛନ୍ତି ।

'ସାରଳା' ତାଙ୍କର ପ୍ରକୃତ ନାଁ ନୁହେଁ । ଏହା ତାଙ୍କର ଆହୃତ ନାମ । ମୂଳତଃ ସିଦ୍ଧେଶ୍ୱର ପରିଡ଼ା ନାଁର ଏଇ ମାଟିକବି ଯୁଗ ଯୁଗ ପାଇଁ କିନ୍ତୁ ସାରଳା ଦାସ ନାଁରେ ପରିଚିତ ହେଲେ । ମୂଳ ନାଁଟି ଅତୀତ ଗର୍ଭରେ ଅବଲୁପ୍ତ ଓ ବିସ୍ମୃତ ହୋଇଗଲା ।

ସେ ବି ଥିଲେ ଶୁକ ମୁନି । ମୁନି, ମୌନୀ, ସାଧକ । ସିଦ୍ଧ ପୁରୁଷ । ଆଜିର ଜଗତ୍‌ସିଂହପୁରର କନକାବତୀ ପାଟଣା ବା ଝଙ୍କଡ଼ ମାଟିର ବରପୁତ୍ର ସେ ଓଡ଼ିଆ ସାହିତ୍ୟର ସମ୍ରାଟ । ଓଡ଼ିଆ ସାହିତ୍ୟରେ ସେ ଆଦିକବି ଭାବେ ବନ୍ଦିତ । କୁହାଯାଏ ପରଶୁରାମ ସ୍ଥାପିତ ଦେବୀ ସାରଳାଙ୍କ ମହାନ ଭକ୍ତ ଥିବାରୁ ସେ ସାରଳାଙ୍କ ଦାସ : ସାରଳା ଦାସ ଭାବେ ନିଜକୁ ପରିଚିତ କରେଇଥିଲେ ।

**ଦେବଭାଷା : ଓଡ଼ିଆ**

ସାରଳା ଉଚ୍ଚ କଣ୍ଠରେ ଘୋଷଣା କଲେ ଯେ ତାଙ୍କ ଲିଖିତ ପ୍ରତିଟି ବାଣୀ ଦେବୀ ସାରଳାଙ୍କ ଉକ୍ତି ।

ଶ୍ରୀ ବର୍ଣ୍ଣି ସାରଳାଙ୍କର ପାଦତଳେ ଦାସ ।
ଶୂଦ୍ରମୁନି ଅପଣ୍ଡିତ ଶ୍ରୀ ସାରଳା ଦାସ ॥

ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ ।
ସାଧୁ ସୁଜ୍ଞଜନେ ଏଥେ ମୋର ଦୋଷ ନାହିଁ ॥

\+ + + + + + +

ଜନ୍ମରୁ ମୂରୁଖ ମୁହିଁ ନାହିଁ ଶାସ୍ତ୍ର ଜ୍ଞାନ ।
ତୁ ଯାହା କହୁ ମୁଁ ତାହା କରଇ ଲିଖନ ॥

ପ୍ରଭୃତି ବହୁ ଶ୍ଳୋକରେ କବି ତାଙ୍କର କବି ସୁଲଭ ନମ୍ରତା ଛଳରେ ପ୍ରମାଣ କରିଗଲେ ଯେ ଓଡ଼ିଆ ଦେବଭାଷା । କାରଣ ଏହା ଦେବୀ ସାରଳାଙ୍କ ମୁଖ ନିଃସୃତ ଭାଷା ( ଆଉ ଦେବୀର ଭାଷା : ଦେବଭାଷା - ବ୍ୟାକରଣ କଲେ) । ସେ ବ୍ରାହ୍ମଣଙ୍କଠାରୁ ସାରସ୍ୱତ ନେତୃତ୍ୱ ଛଡ଼େଇ ନେଲେ ଏବଂ ଏ ଭାଷା ସଂସ୍କୃତ ପରି ମର୍ଯ୍ୟାଦା ସଂପନ୍ନ, ଗୌରବଶାଳୀ, ଓଜଃ ପୂର୍ଣ୍ଣ ଓ ଦେବୀ ଆଶୀର୍ବାଦଯୁକ୍ତ ବୋଲି ଘୋଷଣା କଲେ । ବାସ୍ତବ କ୍ଷେତ୍ରରେ ସେ ଥିଲେ ମହାନ୍ ବିଦ୍ୱାନ ଏବଂ ଭାଷା, ସାହିତ୍ୟ, ସଂଗୀତ, ସମରବିଦ୍ୟା, କୃଷି, ପଶୁ ବିଜ୍ଞାନ, ଆୟୁର୍ବେଦ, ଜ୍ୟୋତିଷଶାସ୍ତ୍ର, ମନୋବିଜ୍ଞାନ, ଦର୍ଶନ, ଧର୍ମ ତତ୍ତ୍ୱ ପ୍ରଭୃତି ବିବିଧ ଦିଗରେ ଧୂରୀଣ ପଣ୍ଡିତ । ନିଜକୁ ମୂର୍ଖ, ଅପଣ୍ଡିତ ବୋଲି କହି ସେ ପରୋକ୍ଷରେ କହନ୍ତି ଯେ 'ଶାସ୍ତ୍ରବାଦୀ ନହୋଇ, ପଣ୍ଡିତଙ୍କ ସଙ୍ଗେ ବସି ନ କଲି ସମାଦି' । 'ଶୂଦ୍ରଯୋନି'ରେ ଜାତ ହୋଇ ବି ପ୍ରତିଭାର ଶୁଭ୍ର ଜ୍ୟୋତି ଜାତିର ସମସ୍ତ ଅନ୍ଧକାରକୁ ଦୂର କରିପାରେ । କବି ଯେ କ୍ରାନ୍ତିଦର୍ଶୀ । କବି ଯେ ତା'ର ମୌଳିକ ସୃଷ୍ଟିରେ ଜାତିକୁ ଉଦ୍‌ବୋଧନ ଦେଇପାରେ, ନୂଆ ଦିଗନ୍ତକୁ କଢ଼େଇ ନେଇପାରେ ! ଏହା ସେ ପ୍ରମାଣ କରିଗଲେ ।

**ମହାନ୍ ସ୍ରଷ୍ଟା :**

ସାରଳାଙ୍କ ସୃଷ୍ଟିର ଗଭୀରତା ଓ ବ୍ୟାପକତା ପରିପ୍ରେକ୍ଷୀରେ ତାଙ୍କର ତୁଳନା ସେହି ଏକା ସିନା ! 'ମହାଭାରତ', 'ବିଲଙ୍କା ରାମାୟଣ', 'ଚଣ୍ଡୀ ପୁରାଣ', 'ଶ୍ରୀଭାଗବତ' ପ୍ରଭୃତି ତାଙ୍କର ବିପୁଳ ସୃଷ୍ଟି । ସେ ଯୁଗରେ ତାଳପତ୍ର ପୋଥିରେ ଲୁହାର ଲେଖନୀରେ କେତେ ଧୈର୍ଯ୍ୟ, ମନୋବଳ, ଅଧ୍ୟବସାୟରେ ଏ ବିପୁଳ ସୃଷ୍ଟି ସେ କରି ଗଲେ - ଭାବିଲେ ମଣିଷ ବିସ୍ମୟଚକିତ ହୋଇ ଉଠେ । ଜାତୀୟ ସ୍ତରରେ ବୋଧହୁଏ ସେ ହିଁ ଏକମାତ୍ର ସ୍ରଷ୍ଟା ଯେ କି ସମଗ୍ର ମହାଭାରତ ଅଠରଖଣ୍ଡରେ ଏକାକୀ ରଚନା କରିଛନ୍ତି ଯୁଗ ଯୁଗ ଧରି ବଙ୍ଗନାରେ ତାଙ୍କ ରଚିତ ମହାଭାରତ ବଙ୍ଗଳିପିରେ ଲେଖାଯାଇ ପଠିତ ହେଉଥିଲା । କାଶୀରାମ ବହୁ ବର୍ଷ ପରେ ସାରଳାଙ୍କ ଅନୁସରଣରେ ବଙ୍ଗଳା ମହାଭାରତ ଲେଖିଥିଲେ । (ପୁଣି ସେ ସବୁ ପର୍ବ ଏକା ଲେଖି ନାହାନ୍ତି) ।

ମହାଭାରତ ଲେଖିବାରେ ସେ ବ୍ୟାସଙ୍କୁ ସଂପୂର୍ଣ୍ଣ ଭୁଲି ଯାଇଛନ୍ତି । ବିଷୟ ବିନ୍ୟାସ, ଚରିତ୍ର ଚିତ୍ରଣ, ଧାର୍ମିକ ଦର୍ଶନ ପ୍ରଭୃତି ବିଭିନ୍ନ ଦିଗରେ ସେ ନୂଆ । ତାଙ୍କ ମହାଭାରତ ନୂଆ କୃତି । ଓଡ଼ିଶାର କୃତି । ଓଡ଼ିଆର କୃତି । ଓଡ଼ିଶାର ଇତିହାସ, ଭୂଗୋଳ, ଜନଶ୍ରୁତି, ଆଶା, ସ୍ୱପ୍ନ, ଆକାଂକ୍ଷା, ସଂସ୍କୃତି, ପୁଣ୍ୟପର୍ବ, ନଦୀ, ପର୍ବତ, ଧାର୍ମିକ ବିଶ୍ୱାସ, ପ୍ରାକୃତିକ

ଶୋଭା ତାଙ୍କ ସୃଷ୍ଟିରେ ସ୍ଥାନ ପାଇଲା । ଏକ ଲକ୍ଷ ଚାଳିଶ ହଜାର ଶ୍ଳୋକରେ କବିଙ୍କ ସୃଷ୍ଟି ମହାଭାରତ ଖାଣ୍ଟି ଓଡ଼ିଆ ମହାଭାରତ : ଓଡ଼ିଆ ଜାତିର ପ୍ରାଣର ଅମଳିନ ପ୍ରତିବିମ୍ବ ।

ସେ ଏକାଧାରରେ ଆମ ସାହିତ୍ୟର ବ୍ୟାସ ଓ ବାଲ୍ମୀକି । ସେ ମହାନ୍ ଆଦିକବି । ସଂସ୍କୃତ କବିଙ୍କ ସମସ୍ତ କଳ୍ପନାକୁ ବିଦୀର୍ଣ୍ଣ କରି ସେ ଯେଉଁ ମହାନ୍ ସୃଷ୍ଟି କରିଗଲେ; ସେ ସମସ୍ତ ଅନୁପମ ଖାଲି ନୁହେଁ, ଓଡ଼ିଆ କଳ୍ପନା ପାଇଁ ଯୁଗାନ୍ତକାରୀ ବୈପ୍ଳବିକ ତୂରୀନାଦ ।

**ବିପ୍ଳବର ଅନ୍ୟ ଦିଗନ୍ତ :**

ସବୁ ଦିଗରୁ ନୂଆ କରିବା ଲକ୍ଷ୍ୟରେ ସାରଳା ପାଲଟି ଗଲେ ଦଳିତ ଲୋକର କବି । ମାନବିକ ମୂଲ୍ୟ ବୋଧ ପାଇଁ କବି ବହୁ ସ୍ଥାନରେ ଆବେଦନ କରିଛନ୍ତି । ମହାଭାରତର ବିଭିନ୍ନ ଚରିତ୍ରକୁ ସେ ଓଡ଼ିଆତ୍ୱ ଦେଲେ । ପୁଣି ଗାଉଁଲି ଲୋକର ଭୂମିକାରେ ସେମାନଙ୍କୁ ପଠେଇଦେଲେ । ଧାର୍ମିକ ସହନଶୀଳତା ତାଙ୍କର ପ୍ରବଚନ । ନିଜେ ଶାକ୍ତ । କିନ୍ତୁ ଶ୍ରୀ ଜଗନ୍ନାଥ, ଗଣପତି, ସୂର୍ଯ୍ୟ, ବିଷ୍ଣୁ, ଶ୍ରୀରାମ ପ୍ରଭୃତି ହିନ୍ଦୁ ଧର୍ମର ବିଭିନ୍ନ ଦେବଦେବୀଙ୍କୁ ସେ ମୁକ୍ତ କଣ୍ଠରେ ପ୍ରାର୍ଥନା କରିଛନ୍ତି ଓ ସେମାନଙ୍କ ଜୟଗାନ କରିଛନ୍ତି । ଏହା ଧାର୍ମିକ ଉଦାରତା ଓ ଧର୍ମ ନିରପେକ୍ଷତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ସିନା ।

ସେଇପରି ତାଙ୍କ ରଚନାରେ ବନବାସୀ ଜୀବନର ବହୁତ ଚିତ୍ର ମିଳିଥାଏ । ଆଉ ଏଇ ବନବାସୀମାନେ ସଭ୍ୟ ନଗରବାସୀଙ୍କଠାରୁ କୌଣସି ଗୁଣରେ ନ୍ୟୂନ ଭାବେ ଚିତ୍ରିତ ହୋଇ ନାହାଁନ୍ତି । ବ୍ରାହ୍ମଣ ଓ ଶବର ମଧ୍ୟରେ ସେ କୌଣସି ପାର୍ଥକ୍ୟ ଦେଖି ନାହାଁନ୍ତି । ସେଥିପାଇଁ ସିନ୍ଧୁ ଜଳରେ ଭାସୁଥିବା ଜଗନ୍ନାଥଙ୍କ ଦାରୁ କେବଳ ବ୍ରାହ୍ମଣ ଓ ଶବରଙ୍କ ସହଯୋଗ ଓ ବନ୍ଧୁତା ଫଳରେ ଉତ୍ତୋଳିତ ହୋଇଛି । ମାନବିକ ସାମ୍ୟ, ଐକ୍ୟ ପାଇଁ କବି ଏଭଳି ବହୁ ଘଟଣାର ବର୍ଣ୍ଣନା ଦେଇଛନ୍ତି ତାଙ୍କ କାବ୍ୟରେ । ଗୋଟିଏ ସ୍ଥାନରେ ସେ ଘୋଷଣା କରିଛନ୍ତି :

ଗୁଣୀ ଗୁଣ ଜାଣି କରି କରୁଥିବୁ ପୂଜା ।
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।।
ପରଦାରା ପରଧନେ ଲୋଭ ନ କରିବୁ ।
ବିବାହିତା ନାରୀ ସଙ୍ଗେ କେବଳ ରହିବୁ ।।
କୃଷି କର୍ମକାରୀ ଜନେ ନ ଦଣ୍ଡିବୁ ଧନ ।
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁସ୍ଥାନ ।।

ରାଜ୍ୟର ଧର୍ମ, ରାଜାର ଧର୍ମ ସଂପର୍କରେ କି ସ୍ପଷ୍ଟ ଘୋଷଣା ! ଗୁଣୀ ଓ ଗୁଣର ପୂଜା ରାଷ୍ଟ୍ରର ଧର୍ମ । କବିମାନଙ୍କୁ ଆଦର ରାଜଧର୍ମ । ନୈତିକ ଆଚରଣ, କୃଷିର ଉନ୍ନତି, ଗୋଚର ସୃଷ୍ଟି ପ୍ରଭୃତି ମାଧ୍ୟମରେ କବି ଯୁଗ ଯୁଗ ପାଇଁ ଏକ ଆଲୋକଦୀପ୍ତ ପଥର ସଂଧାନ ଦେଇଛନ୍ତି ସିନା ।

ତାଙ୍କ ସୃଷ୍ଟିରେ ସେ ଓଡ଼ିଶାର ସବୁ ଜାତିର ଲୋକଙ୍କୁ ଅନ୍ତର୍ଭୁକ୍ତ କରି ଚରିତ୍ରର ଏକ ଦିଗହଜା ପଂକ୍ତି ସୃଷ୍ଟି କରିଛନ୍ତି । ଏମିତିକି ଭୂତ, ବେତାଳ, ଯକ୍ଷ, ରାକ୍ଷସ ବି ସେଥିରୁ ବାଦ ଯାଇ ନାହାଁନ୍ତି ।

**ଲୋକକବି.... ଗଣ କବି :**

ସାରଳା ସବୁ ଦୃଷ୍ଟିରୁ ଜଣେ ମହାନ ଗଣ କବି । ସେ ଏ ମାଟିର ସବୁଠୁ ସାନ ମଣିଷଟିଏ ସହ ନିଜକୁ ଚିହ୍ନିତ କରନ୍ତି । ସେଇ କ୍ଷୁଦ୍ର ଅବହେଳିତ ମଣିଷଟିର ଭାଷାକୁ ସେ ସମ୍ମାନ ଓ ଆଭିଜାତ୍ୟ ଦେଇଛନ୍ତି । ସେଇ ଭାଷା ସାରଳାଙ୍କ ଅଗ୍ନିମୟୀ ଲେଖନୀର ଛୁଆଁରେ ଜୀବନ ପାଇଛି । ସେ ଭାଷା ସଂସ୍କୃତ ନୁହେଁ । ସଂସ୍କୃତଠାରୁ ସ୍ୱତନ୍ତ୍ର ମୁକ୍ତ ଓଡ଼ିଆ ଭାଷା । ପ୍ରତି ଓଡ଼ିଆ ଜାଣେ : ସାରଳାଙ୍କ ଭାଷା, ଶବ୍ଦାବଳୀ, ପ୍ରବଚନ, ରୂଢ଼ି ଆଦି ଓଡ଼ିଆ ଜାତିର ମହାର୍ଘ ସଂପଦ ହୋଇଯାଇଛି । ଇଂରାଜୀ ଭାଷାରେ ଏ ଦିଗରେ ସେକ୍ସପିଅର ଯାହା, ଓଡ଼ିଆରେ ତହୁଁ ବଳି ସାରଳା ଦାସ ।

ତାଙ୍କ ପ୍ରବର୍ତ୍ତିତ ଦାଣ୍ଡିବୃତ୍ତ ତ ଆଜିର ମୁକ୍ତ ଛନ୍ଦର ଜନକ । ତେଣୁ ସେ ଲୋକବାଣୀର ସ୍ରଷ୍ଟା । ଲୋକ ଛନ୍ଦର ଗାୟକ । ଲୋକ ଚରିତ୍ରର ସ୍ରଷ୍ଟା । ମହାନ ଲୋକ କବି । ଓଡ଼ିଆ ସାହିତ୍ୟ କାହିଁକି, ଭାରତୀୟ ଦୃଶ୍ୟପଟରେ ତାଙ୍କର ସମକକ୍ଷ ନାହାଁନ୍ତି ।

**ଶେଷକଥା :**

ସାରଳା ଓଡ଼ିଆ ସାହିତ୍ୟର ସ୍ୱାଭିମାନ । ସେ ଯେଉଁ ବିପ୍ଳବର ମହାଯଜ୍ଞ ଆରମ୍ଭ କରିଥିଲେ, ସେ ଯଜ୍ଞରୁ ସଂଭୂତ ହୋଇଛି ଓଡ଼ିଆ ଭାରତୀ । ଆଜିଯାଏ ସେ ବଞ୍ଚିଲେଣି ପାଞ୍ଚଶ ବର୍ଷ । ସାରଳାଙ୍କ କୃତି ଓ କୀର୍ତ୍ତି ଅନିର୍ବାଣ । ତାଙ୍କ କାଳର ସାମ୍ରାଜ୍ୟର ବହୁ ଅଂଶ ଆଜି ଆନ୍ଧ୍ର, ବିହାର, ବଙ୍ଗଳା, ମଧ୍ୟ ପ୍ରଦେଶ ଛଡ଼େଇ ନେଇଛନ୍ତି । ଜାତି ଖଣ୍ଡିତ ମାଟିକି ନେଇ ମୁଣ୍ଡ ନୁଆଁଇ ଚାଲିଛି । ମାତ୍ର ଜାତିର ଇତିହାସରେ ସେ ବଞ୍ଚିବେ ସେଦିନ ଯାଏ-ଯୋଉ ଯାଏ ବଞ୍ଚି ରହିବ ଓଡ଼ିଆ ଜାତି-ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟ । ସେ ଯେ ଓଡ଼ିଆ ପ୍ରାଣ, ସଂସ୍କୃତି, ଜାତୀୟତା ଓ ସ୍ୱାଭିମାନର ପ୍ରତିଷ୍ଠାତା ।

---

ସଭାପତି,
ଓଡ଼ିଆ ଭାଷା ବଞ୍ଚାଅ ସାଙ୍ଖ୍ୟ
ସାମନ୍ତ ସାହି, କଟକ - ୭୫୩ ୦୦୧

—0—

# କାଲି କଥା ଯେବେ କିଏ ପଚାରେ

ଅଧ୍ୟାପକ ଡଃ ରବି ନାୟକ

କାଲିର କଥା ଆଜି ସପନ । ଉତ୍କଳ ଦିନେ କଳାର ପୀଠସ୍ଥଳୀ ଥିଲା । ଆଜି ବି ଅଛି । କର୍ପୂର ଉଡ଼ିଛି । କନା ପଡ଼ି ରହିଛି । ସେତେବେଳେ କଳାର ପୀଠ ଗଢ଼ି ଉଠିଥିଲା, ବେଠି, ବେଗାରୀରେ, ଏକଥାକୁ ସତ୍ୟ ବୋଲି ଗ୍ରହଣ କରାଯାଇନପାରେ । ସେ ପ୍ରଥା ବନ୍ଦ ହେବା ପରେ କଳାର ଯେ ଅକାଳ ମୃତ୍ୟୁ ଘଟିଛି, ଏହା ମଧ୍ୟ ନୁହେଁ । ତେବେ ଅଭାବ କେଉଁଠି ? ଆର୍ଥିକ ସ୍ୱଚ୍ଛଳତା, ଶିଳ୍ପୀର ହସ୍ତ ନୈପୁଣ୍ୟ, ନିର୍ମାଣ ପାଇଁ ଉପାଦାନର ପଦାର୍ଥ କିମ୍ବା ମନୋବଳକୁ କାରଣ ରୂପେ ନିଆଯାଇପାରେ । କରଣୀ ଅଛି, ହାତର ବାହାଦୁରୀ ନାହିଁ । ସିମେଣ୍ଟ ଅଛି, ପୂର୍ବର ଗୁଣ ନାହିଁ । ବିଜ୍ଞାନ ଆଗେଇଛି । ଭଲ ବାଟକୁ ଦେଖାଉଛି, କିନ୍ତୁ ଆମେ ଭେଲ ପଥକୁ ବାଛି ନେଉଛେ । କେତୋଟି ଦୃଷ୍ଟାନ୍ତ ଆଲୋଚନା ପରିସର ମଧ୍ୟକୁ ନିଆଯାଉ ।

ପଞ୍ଚସଖା ଯୁଗର ତତ୍ତ୍ୱଦର୍ଶୀ, ଭକ୍ତକବି, ଅତିବଡ଼ି ଜଗନ୍ନାଥ ଦାସ ଭାଗବତ ପୋଥି ରଚନା କଲେ । ପ୍ରାନ୍ତୀୟ ସାହିତ୍ୟରେ ଭାଗବତର ମଧୁର ପଦାବଳୀ ପ୍ରାୟ ସମକକ୍ଷ ଭାଗବତ ରଚନା ପାଇଁ କେହି ସମର୍ଥ ହେଲେ ନାହିଁ । ଏପରିକି ପଡ଼ୋଶୀ ବଙ୍ଗଳା ସାହିତ୍ୟରେ ବଙ୍ଗଳା ଭାଷାରେ କେତେକ ପଦ ରଚିତ ହେଲେ ମଧ୍ୟ ଗ୍ରନ୍ଥକାର ନିଜର ଅସାମର୍ଥ୍ୟ ପ୍ରକାଶ କରି ଭାଗବତର ପଦାବଳୀକୁ ତାଙ୍କ ଗ୍ରନ୍ଥରେ ମିଶାଇ ଦେଲେ । ଭାଗବତ ପୋଥିର ପୂଜା ପାଇଁ ଭାଗବତ ଟୁଙ୍ଗିମାନ ଗଢ଼ି ଉଠିଲା । ଭାଗବତ ଖଟୁଲିରେ ପୂଜା ପାଇଲା । ସଞ୍ଜବେଳେ ଭାଗବତ ଟୁଙ୍ଗିରୁ ଭାଗବତର ପଦାବଳୀ ଆବୃତ୍ତିକାର କଣ୍ଠରୁ ଭାସି ଆସିଲା । ଆବାଳ ବୃଦ୍ଧ ବନିତା ଏକତ୍ରିତ ହୋଇ ଭାଗବତ ଶ୍ରବଣରେ ନିଜ ଜୀବନକୁ ଧନ୍ୟ କଲେ । ପାଠ ଶେଷରେ ହରିବୋଲ, ହୁଳହୁଳି ଧ୍ୱନିଦେଇ ବାଉଁଳି ଭଖୁରା ଖାଇ ପ୍ରଶାନ୍ତ ମନରେ ଘରକୁ ଫେରିଲେ । ଦୈନନ୍ଦିନ ଜୀବନ ନିର୍ବାହ କ୍ଷେତ୍ରରେ ଭାଗବତର ପଦାବଳୀ ଉଦ୍ଧାର କରି ସବୁ ଯୁକ୍ତିତର୍କର ସମାଧାନ ଘଟିଲା ।

ଚାଟଶାଳୀରେ ଶିକ୍ଷାଦାନ କ୍ଷେତ୍ରରେ ଭାଗବତ ବୋଲାଯାଉଥିଲା । ଭାଗବତ ଦିପଦ ମୁଖସ୍ଥ ନକଲେ ଶିକ୍ଷା ତା'ର ପୂର୍ଣ୍ଣାଙ୍ଗ ହେଉ ନଥିଲା । ଝିଅଟିର ଶ୍ୱଶୁର ଘରେ ଭାଗବତ ପାଠର ପରୀକ୍ଷା ହେଉଥିଲା । ଦିବିରି ଆଲୁଅ ନିକଟରେ ପିଢ଼ା ଉପରେ ଭାଗବତକୁ ଥୋଇ ଅବିରାମ ଭାବରେ ଭାଗବତ ଦୁଇ ଅଧ୍ୟାୟ ବୋଲି ଦେଲେ, ଶିକ୍ଷିତ ଝିଅଟି ବୋଲି ସେ ବିବେଚିତ ହେଉଥିଲା । ଗ୍ରାମରେ ବିସୂଚିକା ଲାଗିଲେ, ତାହାର ଦୂରୀକରଣାର୍ଥେ ପାଠ କରାଯାଉଥିଲା ଭାଗବତ । ଆତ୍ମାର ମୋକ୍ଷ ପାଇଁ ମୃତବ୍ୟକ୍ତିର ଏକାଦଶ ତିଥିରେ ମଧ୍ୟ ଭାଗବତ ବୋଲାଯାଉଥିଲା ।

ଭାଗବତ ଟୁଙ୍ଗିଥିଲା ଏକାଧାରରେ ଗ୍ରାମର ପାଠଶାଳା, ସମବାୟ ଅନୁଷ୍ଠାନ, ସବୁ ମତାନ୍ତର, ମନାନ୍ତରର ବିଚାର ସ୍ଥଳୀ । ଅବଧାନେ ଭଗବତ ଟୁଙ୍ଗିରେ ପିଲାମାନଙ୍କୁ ଅଙ୍କଗଣନା, ପଣିକିଆ, ମିଶାଣ, ଫେଡ଼ାଣ, ନଳମାପ, ଗୋପୀଭାଷା, ଭାଗବତ ଶିକ୍ଷା ଦେଉଥିଲେ । ଗ୍ରାମରେ କୌଣସି ମନାନ୍ତର କିମ୍ବା ମତାନ୍ତର ହେଲେ, ଉଭୟ ଦଳ ଆସୁଥିଲେ ଭାଗବତ ଟୁଙ୍ଗିକୁ । ଗାଁର ମୁଖିଆ ତାକୁ ବିଚାର କରୁଥିଲେ । ଭାଗବତ ଗାଦି ସମ୍ମୁଖରେ କେହି ମିଛ କହିବାକୁ ସାହସ କରୁନଥିଲେ । କୌଣସି ଲୋକର ଶୁଦ୍ଧି କ୍ରିୟାରେ କିମ୍ବା ମାଙ୍ଗଳିକ ଉତ୍ସବରେ ଭାଗବତ ସମବାୟ ସମିତିରୁ ଅଳ୍ପସୁଧରେ ସେମାନେ ଋଣ ନେଇ ପାରୁଥିଲେ । ସେ ପାଣ୍ଠି ମଧ୍ୟ ସଂଗୃହୀତ ହେଉଥିଲା ଗ୍ରାମବାସୀଙ୍କଠାରୁ । ତେଣୁ ମହାଜନଠାରୁ ବହୁହାର ସୁଧରେ ଟଙ୍କା କରଜ ନେବାକୁ ପଡୁନଥିଲା । ସର୍ବୋପରି ପଲ୍ଲୀର ପରିବେଶକୁ ଧର୍ମଭାବାପନ୍ନ ତଥା ଶାନ୍ତ କରିବାରେ ଭାଗବତ ଘରର ଭୂମିକା ଯଥେଷ୍ଟ ଥିଲା । କିନ୍ତୁ ସାଂପ୍ରତିକ କାଳରେ  ଭାଗବତ ଘର ଦେଖିବାକୁ ସ୍ୱପ୍ନ । ଭାଗବତ ପୋଥି ଛପା ହେଲାଣି । ତାହା ଆଉ ଖଟୁଲିରେ ପୂଜା ପାଉ ନାହିଁ । ବିମାନଗୁଡ଼ିକ ଭାଙ୍ଗିରୁଜି ଗଲେଣି । କୁଆଡ଼େ ଗଲା ସେଦିନର ଧର୍ମଭରା ପଲ୍ଲୀର କମନୀୟ ପରିବେଶ ? ଉଚ୍ଚ ରାଜନୀତି ଦଳକୁଖସି, ଗାଁ ଗହଳରେ ଗଲାରି ପଶି । ପଲ୍ଲୀର ଶାନ୍ତ କ୍ରୋଡ଼ ଆଜି ବିଷାକ୍ତ । ଧର୍ମର ଯୋଡ଼ଣି ତଳେ ପିଷ୍ଟ ହେବାକୁ ଅସୁଖ ମଣି ସେ ହୋଇଛି ରକ୍ତମୁଖା ।

ସେହିପରି ଚାଟଶାଳୀ ବା ଚାହାଳିକୁ ବିଚାର କ୍ଷେତ୍ରକୁ ନିଆଯାଉ । ଗ୍ରାମରେ ଚାଟଶାଳୀଗୁଡ଼ିକ ଗଢ଼ିଉଠିଥିଲା । ମାଟିବଂଶ ଅବଧାନମାନେ ଥିଲେ ଚାଟଶାଳୀର ଶିକ୍ଷକ । ସେମାନେ ସାଂପ୍ରତିକ କାଳର ସାର୍ଟିଫିକେଟର ଅଧିକାରୀ ନୁହନ୍ତି । କିନ୍ତୁ ସେମାନଙ୍କ ପାଣ୍ଡିତ୍ୟ ଯଥେଷ୍ଟ ଥିଲା । ଲୀଳାବତୀ ସୂତ୍ରଠାରୁ, ନଳ ଜମିମାପ ଏପରିକି ଭାଗବତ ପର୍ଯ୍ୟନ୍ତ ସବୁ ତାଙ୍କର କଣ୍ଠସ୍ଥ ଥିଲା । ସେତେବେଳେ ଚାଟଶାଳୀରେ ଶୂନ, ଏକ ଦେବାର ପ୍ରଥା ଥିଲା । ଯେଉଁ ଛାତ୍ର ପ୍ରଥମେ ଆସୁଥିଲା, ତା ହାତରେ ଅବଧାନ କେବଳ ବେତଟାକୁ ଛୁଆଁଇ ଦେଉଥିଲେ । କ୍ରମଶଃ ଯିଏ ଯେତିକି ବିଳମ୍ବରେ ଆସୁଥିଲା ତା'ହାତର ବେତମାଡ଼ ଅଧିକ ହେଉଥିଲା । ତେଣୁ ଚାଟଶାଳୀରେ ବେତମାଡ଼ ଭୟରେ ଶୀଘ୍ର ପହଞ୍ଚିବା ପାଇଁ ବ୍ୟଗ୍ରତା ଛାତ୍ରମାନଙ୍କଠାରେ ଲକ୍ଷ୍ୟ କରାଯାଉଥିଲା । ନିୟମିତ ଉପସ୍ଥାନ ସେମାନଙ୍କ ଜୀବନରେ ଶୃଙ୍ଖଳା ଭରି ଦେଉଥିଲା । ଯାହାର ପରିଣତି ସ୍ୱରୂପ ସେମାନେ ଶୃଙ୍ଖଳିତ ନାଗରିକ ହୋଇ ବାହାରୁଥିଲେ । ଗଣେଶ ପୂଜା ଉପଲକ୍ଷେ

ଗଣେଶ ମୂର୍ତ୍ତି ନିର୍ମିତ ନହୋଇ ଏକ କଡ଼ିଆକୁ ଚିତ୍ର କରାଯାଇ ପୂଜା କରାଯାଉଥିଲା । ଛାତ୍ରମାନେ ଘର ଲିପା ପୋଛା କରି ସଂଗୃହୀତ ଫୁଲରେ ଗଣେଶଙ୍କୁ ସଜାଇ ଭକ୍ତି ସହକାରେ ତାଙ୍କର ବନ୍ଦନା ଗାନ କରୁଥିଲେ । ପୂଜାପରେ ଭୋଗଖାଇ ଆନନ୍ଦ ମନରେ ସ୍ୱଗୃହକୁ ଫେରୁଥିଲେ । ଅବଧାନଙ୍କ ପ୍ରତି ଭକ୍ତି ଛାତ୍ରମାନଙ୍କର ଯଥେଷ୍ଟ ଥିଲା । ସେମାନଙ୍କର ଭୟ ଥିଲା, ତେଣୁ ଭକ୍ତିଥିଲା । ଅବଧାନମାନେ ପାଳିକରି ଛାତ୍ରମାନଙ୍କ ଘରେ ଖାଉଥିଲେ । କିମ୍ବା ଯେଉଁ ଛାତ୍ରର ଘରେ ଖାଇବା ପାଇଁ ଅସୁବିଧା ହେଉଥିଲା, ସେ ଘରୁ ସିଧା, (ଚାଉଳ, ଡାଲି, ପରିବା ପ୍ରଭୃତି) ଆସୁଥିଲା ।

ଚାଟଶାଳୀ ଗଲା । ବିଦ୍ୟାଳୟ ହେଲା । ଯୁଗ ସହ ତାଳ ଦେଇ ପାଠ୍ୟକ୍ରମ ପ୍ରସ୍ତୁତ ହେଲା । କିନ୍ତୁ ଚାଟଶାଳୀର ସମବେତ ପ୍ରାର୍ଥନା, ଶୁନ ଏକ ଦିଆ ପ୍ରଥା, ଅବଧାନ ପ୍ରତି ଛାତ୍ରର ଭକ୍ତିଭାବ କମି ଆସିଲା । ଯାହାକି ବିସ୍ତାରିତ ରୂପ ନେଲା ମହାବିଦ୍ୟାଳୟ ପର୍ଯ୍ୟନ୍ତ । ଶିକ୍ଷାମନ୍ଦିରର ପବିତ୍ରତା ଭୁଲି ଶିକ୍ଷା ପଦ୍ଧତି ହେଲା କଳୁଷିତ । ଆଜି ସେ ଚାଟଶାଳୀ ନାହିଁ । ଅବଧାନର ବେତ୍ରାଘାତ ନାହିଁ । ଶ୍ରେଣୀ ଗୃହର ବଡ଼ଚାଟ ନାହିଁ । ତା ସ୍ଥାନ ଦଖଲ କରିଛି ନିର୍ବାଚନ । ନିର୍ବାଚନ ଲାଗି ମହାବିଦ୍ୟାଳୟ ରଣାଙ୍ଗନ । ଶିକ୍ଷକର ମନୋନୀତ ପ୍ରାର୍ଥୀ ଆଜି ନିର୍ବାଚିତ ଛାତ୍ର ପ୍ରତିନିଧି ନୁହେଁ । ଶିକ୍ଷକର ମୁଖ ନିଃସୃତ ସାର୍ଟିଫିକେଟ ଆଜି ଯୋଗ୍ୟତାର ମାପକାଠି ନୁହେଁ । ସବୁ ବଦଳିଛି, ଆମ୍ଭେମାନେ ଉନ୍ନତିର ପଥେ କି ତୈଳ ଖୁମ୍ବରେ ଗେଣ୍ଡା ଚଢ଼ିଲା ପ୍ରାୟ ହେଉଛୁ, ସେ ବିଚାର ଆପଣମାନଙ୍କ ହାତରେ ।

ସେହିପରି ପଲ୍ଲୀ ଅଞ୍ଚଳର ସାହିମାତା, କାଳିକା, ଘୋଡ଼ାନାଚ, ମୁଣ୍ଡପୋତା କେଳାର ଅଭିନୟ, ସଖୀ କୁଣ୍ଢେଇ ନାଚ ପ୍ରଭୃତିକୁ ଆଲୋଚନା କ୍ଷେତ୍ରକୁ ନିଆଯାଉ । ଯାହାକି ପଲ୍ଲୀବାସୀଙ୍କ ପ୍ରାଣରେ ଆନନ୍ଦ ଭରି ଦେଉଥିଲା । ସାହିଯାତ୍ରାରେ କେଳା କେଳୁଣୀ ବାହାରନ୍ତି, ନାଗାର୍ଜୁନ ବାହାରେ । ବାହାରନ୍ତି ବାଘ, ଶିକାରୀ । ପାର୍ଶ୍ୱରେ ଥାଆନ୍ତି ଡାଳଭୂତ ଓ ପାଳଭୂତ । ଜଣେ ନିଜ ଦେହକୁ ଡାଳପତ୍ରରେ ଆଚ୍ଛାଦିତ କରିଥାଏ । ଆଉ ଜଣେ ପାଳକୁଟାରେ ନିଜ ଦେହକୁ ଘୋଡ଼ାଇଥାଏ । ଆଖି ଦୁଇଟି ଛାଡ଼ି ସେମାନଙ୍କ ସଂପୂର୍ଣ୍ଣ ଦେହ ଆଚ୍ଛାଦିତ । ସେମାନଙ୍କ କହିବାର କିଛି ନଥାଏ । ଭୁରୁ ଭୁରୁ କରି ଚାହିଁ ଅନ୍ୟାନ୍ୟ ଖେଳାଳୀଙ୍କ ସହ ଆଗକୁ ସେମାନେ ମାଡ଼ି ଚାଲନ୍ତି । ଢୋଲ ଓ ମହୁରୀ ବାଦ୍ୟ ରୂପରେ ବ୍ୟବହୃତ ହୁଏ । ଦେବଦାରୁ ପତ୍ରରେ ବାଉଁଶ ପାତିଆ ଦ୍ୱାରା ଏକ ଡିମ୍ବାକୃତି ଝାଡ଼ ବନ୍ଧାଯାଇଥାଏ । ମଧ୍ୟଭାଗଟି ଖୋଲା । ଦୁଇଜଣ ଦୁଇପାଖରେ ଧରି ଛିଡ଼ା ହୋଇଥାନ୍ତି । ଗୋଟିଏ ପଟେ ଶିକାରୀ । ହାତରେ ଧନୁଶର ଅନ୍ୟପଟରେ ବାଘ ମୁଖାଧାରୀ ମଣିଷଟି । ବାଘ ବହୁ କୁଦାମାରେ । ବଳିଆ (ମଶାଲ) ଆଲୁଅରେ ଶିକାରୀ ବହୁ ଅଙ୍ଗଭଙ୍ଗୀ କରି ନାଚେ । ଶେଷରେ ଯେଉଁ ଶରଟି ମାରେ ସେଥିରେ ଆହତ ହୋଇ ମଣିଷ ବ୍ୟାଘ୍ରଟି ତଳେ ପଡ଼ିଯାଏ ।

ଖେଳ ଗୋଟିଏ ସ୍ଥାନରୁ ସରେ । ଅନ୍ୟ ଏକ ସ୍ଥାନରେ ପୁଣି ଆରମ୍ଭ ହୁଏ । ପଛେ ପଛେ କାଳିକା । ଢୋଲ, ଘଣ୍ଟ ବାଦ୍ୟ ବାଜେ । ଗ୍ରାମଦେବତୀ ତାଙ୍କୁ ପ୍ରସନ୍ନ ହୋଇଥାନ୍ତି । ଦୁଇମାଡ଼ି ଦାନ୍ତ ମଝିରେ ଧରିଥାଏ । କଦଳୀଭଣାର ଗୋଟିଏ ପାଖୁଡ଼ା । ପୁନାଙ୍ଗ ତେଲର ବଳିଆ ନିକଟରେ ଭଣାର ପାଖୁଡ଼ାଟି ଦେଇ ମରାଯାଇ ଜିଭ ଭଳି ଦେଖାଯାଉଥାଏ । ହାତରେ ଖଣ୍ଡା । କଳାଶାଢ଼ୀ ପରିଧାନ କରିଥାଏ । ଦେହ ଆଉ ମୁହଁସାକ କଳା ବୋଳା । ସେହି କଳାମୁହଁରେ ଦୁଇ ଓଠ ପାଖରେ ଧଳା ଦୁଧଖଡ଼ିର ଦାନ୍ତ ଚିହ୍ନ । କପାଳ ଦେଶରେ ଗୋଲାକାର ସିନ୍ଦୁର ବିନ୍ଦୁ । କେତେକ ସ୍ଥାନରେ ତାଳପତ୍ରରେ ଗଢ଼ିଲଗା ମୁକୁଟ, କେତେକ ସ୍ଥାନରେ ଲମ୍ବା କେଶୀ । ବାଦ୍ୟକରମାନେ ଢୋଲ ବାଦ୍ୟ ସହ ନାଚି ନାଚି ସେମାନଙ୍କ ଘଣ୍ଟକୁ ତାଳ ଦେଇ ବଜାନ୍ତି । ଦୋହଲି ଦୋହଲି କାଳିକା ନାଚେ ବାଦ୍ୟ ସହ ତାଳ ଦେଇ । ତା ହାତରେ ଥିବା ଖଣ୍ଡା ଚାଳନା ଅନେକ ଦର୍ଶକଙ୍କୁ ଭୟଭୀତ କରିଥାଏ । ତାର ଶ୍ରମ ଲାଘବ ପାଇଁ ଜଣେ ତାଳପତ୍ର ବିଞ୍ଚଣାରେ ତାକୁ ବିଞ୍ଚୁଥାଏ । ସେ ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ ।

ସେହିପରି ଖରାଦିନେ ମୁଣ୍ଡପୋତା କେଳାମାନେ ଆସନ୍ତି । କାନ୍ଧରେ ଝୁଲାମୁଣି । ହାତରେ ଦେଢ଼ଫୁଟ ଲମ୍ବର ଏକ ବଙ୍କା ବାଉଁଶରେ ବିଚିତ୍ର କଳାରେ ବନ୍ଧା ଘୋଡ଼ା । ଆଉ ଗୋଟିଏ ହାତରେ ଶାବଳ । ଉପରେ ମଧ୍ୟାହ୍ନ ସୂର୍ଯ୍ୟଙ୍କର ପ୍ରଖର କିରଣ । ତଳେ ଉତପ୍ତ ବାଲୁକାରାଶି । ଗାଁ ଦାଣ୍ଡର ମଧ୍ୟ ଭାଗରେ କେଳା ଝୁଲାମୁଣିଟି ରଖିଦିଏ । ଖାଲିବୁହା ଦେହରେ ତତଲା ବାଲି, ମାଟିକୁ ବୋଳି ପକାଏ । ଦୁଇ ଜଂଘ ମଝିରେ ତାର ହାତ ତିଆରି ଘୋଡ଼ାକୁ ଗୋଟିଏ ହାତରେ ଧରେ । ଆଉ ଗୋଟିଏ ହାତରେ ପିଚାରେ ଚପେଟାଘାତ କରୁଥାଏ । ଘୋଡ଼ା ମୋର କନ୍ଦ ଖାଉଛ, ଘୋଡ଼ା ମୋର ମିଶ୍ରି ଖାଉଚ କହି ଦୌଡ଼ିବାକୁ ଆରମ୍ଭ କରେ । ଚାରି ପାଞ୍ଚଥର ଆଗପଛ ଦଉଡ଼ି ଦଉଡ଼ି ଘୋଡ଼ାକୁ ଝୁଲାମୁଣି ପାଖରେ ରଖିଦିଏ । ତାପରେ ସେହି ଦାଣ୍ଡରେ ଶାବଳ ସାହାଯ୍ୟରେ ଗାତଟିଏ ଖୋଳେ । ଯେପରି ଗାତ ମଧ୍ୟରେ ମୁଣ୍ଡ ରହି ପାରିବ । ତାପରେ ତତଲା ବାଲି ଉପରେ ଶୋଇପଡ଼ି ମୁଣ୍ଡଟାକୁ ଗାତ ମଧ୍ୟରେ ପୂରାଇଦିଏ । ମୁହଁ ଉପରେ ମାଟି ନଦି ଦେଇ ଦର୍ଶକଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡ଼େ । ବିଛା ହୋଇଥିବା ଗାମୁଛା ଉପରେ ଦର୍ଶକ ସମାଜ ଚାଉଳ, ପଇସା ପକାନ୍ତି । ତାପରେ ମୁହଁରୁ ମାଟିକାଢ଼ି, ଚାଉଳ ପଇସା ଧରି ଆଉ ଗୋଟିଏ ସ୍ଥାନକୁ ଯାଏ ଖେଳ ଦେଖାଇବା ପାଇଁ ।

ସେହିପରି ସଖୀ କୁଣ୍ଢେଇ ଧରି କାନ୍ଧରେ ଝୁଲାମୁଣି ତଥା ଢୋଲକ ପକାଇ ଆସନ୍ତି ସଖୀ ନଚା କେଳା । ତାଙ୍କର ଖେଳ ପ୍ରଦର୍ଶନର ଦୂରତ୍ୱ ଅଧିକ ନୁହେଁ । ଚାରି, ପାଞ୍ଚୋଟି ଘର ନିର୍ବାଚନ କରି କେଳାଟି ବସିଯାଏ । ଡାହାଣ ହାତରେ ସଖୀ କୁଣ୍ଢେଇ । କାଠରେ ତିଆରି ଛିଟ ଫ୍ରକ ପିନ୍ଧା କଣ୍ଢେଇଟିଏ । ବାମ ହାତରେ ଢୋଲକ ବାଜେ । ଡାହାଣ ହାତଟି ଛିଟ ଫ୍ରକ ମଧ୍ୟରେ ଥାଏ । ହସ୍ତ ଓ ଅଙ୍ଗୁଳି ଚାଳନା ମଧ୍ୟରେ ସଖୀ କୁଣ୍ଢେଇଟି ନାଚେ, ତାଳିମାରେ । ମୁହଁ ମୋଡ଼େ । ମୁଣ୍ଡ ନୁଆଁଏ । ହାତଯୋଡ଼ି ଚାଉଳ ପାଇଁ ଅଳି କରେ । ଚାଉଳ କି ପଇସା ପାଇଲେ ସଖୀ କୁଣ୍ଢେଇ ଧରି କେଳା ଅନ୍ୟଦ୍ୱାରକୁ ଯାଏ । ଆସନ୍ତି ସବାଖିଆ ଦଳ ବେକରେ ସାପ ପକାଇ । ସେମାନେ ସର୍ବଗିଳା । ବାଛ ବିଚାର କିଛିନଥାଏ । ଚିଲ ମାଂସ ଠାରୁ ଶାଗୁଣା ମାଂସ ତାଙ୍କର ଆହାର । ବର୍ତ୍ତମାନ ପୋକଦାଉରୁ ଧାନକୁ

ରକ୍ଷା କରିବା ପାଇଁ ରାସାୟନିକ ଔଷଧ ଧାନ ବିଲରେ ପଡୁଛି । ତାକୁ ଖାଇ ମାଛ ମରୁଛନ୍ତି । ସେ ମାଛକୁ ଖାଇ ସାପମାନେ ମରୁଛନ୍ତି । ସେ ସାପକୁ ଖାଇ ଚିଲବଂଶ ଲୋପ ହେଲାଣି । ବାମରେ ଦେଖିଲି ଚାଠୀ ଛିଥାଳି, ଡାହାଣେ ଦେଖିଲି ଶଙ୍ଖା (ଶଙ୍ଖଚିଲ), ଆଗରେ ଦେଖିଲେ ଭଦଭଦଳିଆ ପାରି ହୋଇଯିବ ଲଙ୍କା'' ର ସ୍ୱର ପଲ୍ଲୀ ଜନତାର କଣ୍ଠରୁ ଆଉ ଭାସି ଆସୁନାହିଁ । ଆଉ ସେ ସବାଖିଆ ଛାଡିବି ଗାଁ ଗହଳିକୁ ଆସିବା କମି ଗଲାଣି । ଆସନ୍ତି ନଳୁଆ କେଳା । ହାତରେ ତାଙ୍କର ନଳମୁଠା । ଗଛଉପରେ ବସିଥିବା ପକ୍ଷୀଟି ଉଦ୍ଦେଶ୍ୟରେ ସେମାନେ ନଳ ଯୋଖନ୍ତି । ନଳର ଶେଷକାଠି ଅଠାବୋଳା କିମ୍ବା ଲୌହଧାତୁ ନିର୍ମିତ ତୀକ୍ଷଣ କଣ୍ଟା ପକ୍ଷୀଟି ଧରାଦିଏ, ଚିତ୍କାର କରେ । ତାପରେ ରୁହେ କେଳାର ଝୁଲାମୁଣି ମଧ୍ୟରେ ।

ସେହି ଝୁଲାମୁଣି ମଧ୍ୟରେ ଥାଏ ହରେକ୍ ପଦାର୍ଥ । ଝକମକି ପଥର, ସୋଲଠାରୁ ଗଡ ପର୍ଯ୍ୟନ୍ତ । ଆଉ ଝକମକି ପଥର ଘସାଯାଇ ସୋଲରେ ନିଆ ଲାଗୁନି । ଦିଆସିଲ, ଲାଇଟର ଯୁଗରେ ତା'ର ବା ଆବଶ୍ୟକତା କ'ଣ ? ଆଉ ଚୈତ୍ର ପୂର୍ଣ୍ଣମୀ ଉପଲକ୍ଷେ ଗାଆଁରେ ଘୋଡ଼ା ନାଚ ହେଉ ନାହିଁକି କୈବର୍ତ୍ତର ମାଛକେଟି ଦେଖିବାକୁ ମିଳୁନାହିଁ ।

ସେହିପରି ଶରତ କାଳୀନ ନିର୍ମଳ ଆକାଶରେ ଜହ୍ନ ନିଏ କୁଆଁର ପୁନେଇର ଚାନ୍ଦ । କୁମାର ପୂର୍ଣ୍ଣିମା । କୁମାର କାର୍ତ୍ତିକେୟଙ୍କର ପୂଜା । ସକାଳେ ଆଞ୍ଜୁଳି ଦେବା । ସନ୍ଧ୍ୟାରେ ଚନ୍ଦ୍ର ଉପାସନା । ଚାନ୍ଦ ବୁଢ଼ା ହେବନି । ରାତିର ଆଗମନ ପୂର୍ବରୁ କୁଆଁରୀ ଝିଅର ତଉଳା ମୂଳେ ପୂଜା ଓ ଚାନ୍ଦ ଚକଟା । ରାତିରେ ଶିଶିର ଭିଜା ଆକାଶତଳେ କୁମାରୀମାନଙ୍କ ମେଳ ଗାଡିକା । କୁଆଁର ପୁନେଇଁ ଜହ୍ନଗୋ ଫୁଲ ବଉଳବେଣୀ ଗୀତ ଭାସି ଆସୁନି କୁମାରୀ କଣ୍ଠରୁ । ସେ ଲଜ୍ଜାଶୀଳା, ଆଧୁନିକା, ଉଗ୍ର ଆଧୁନିକା । ମନପ୍ରାଣିଆ ଗୀତଗାଏ ରୂପ ନେଉଛି ବାଧକତାରେ । ବେଙ୍ଗ ବାହାଘର ଆଜି ସ୍ୱପ୍ନ । ବେଦୀ କୁମାର ପୂର୍ଣ୍ଣମୀର ଚନ୍ଦ୍ରିକା ସ୍ନାତ ରଜନୀରେ ଆଉ ବନ୍ଦା ହେଉନାହିଁ କି କୁମାର କୁମାରୀ ବରକନ୍ୟା ବେଶ ଧରି ମିଛି ମିଛିକା ବାହାଘରରେ ନିମଗ୍ନ ହେଉ ନାହାନ୍ତି ।

ଷଢ଼େଇର ଝିଙ୍କା ଉପରେ ଷଢ଼େଇର ହାଣ୍ଡି ବସି ମିଛି ମିଛିକା ବାଲିର ଭାତ, ଦୁଅଣ ବାଇଗବା ପତ୍ର ଉପରେ ପରଶା ଯାଉନାହିଁ । ବଉଳ, ମିତ, ବଦ୍ଧି, ସଂଗାତ କୁମାରୀ ମେଳରୁ ଲୋପ ପାଇଲାଣି । ଗ୍ରାମ୍ୟ କିଶୋରୀର ପ୍ରତିଯୋଗରେ ଗାଁ ଦାଣ୍ଡର ଧୂଳି, ଆକାଶକୁ ଛୁଇଁନି । କତିଫୁଲ, କାକୁଡ଼ି ଫୁଲ ଦୋ, ଠା ଚୁଙ୍କେଇ ମୂଷା କହି ଯାଉଛି ଚାଉଳ ଆଜି ସବେତନ ନିଜର ବଗର, ପଦପଦବୀ ପାଇଁ । ମାଟି ସହ ଏକାକାର ହୋଇ ପ୍ରକୃତିର ସନ୍ତାନ ପ୍ରକୃତି କୋଳରେ ବଢ଼ି ପ୍ରକୃତିକୁ ହତାଦର କରୁଛି । ତେଣୁ ନିବିଡ଼, ନିଜ ମନରୁ ସ୍ୱଚ୍ଛ ଗୀତକୁ ଭୁଲିଛି । ସେହି ଗୀତ ମଧ୍ୟରେ ଦୃଷ୍ଟା ଯେଉଁ ଉଦାଏ ଉଦାଏ ଭାବ ରଖିଯାଇଛନ୍ତି, ତାହା ସାଂପ୍ରତିକ ସାହିତ୍ୟରେ ମିଳିବା ଦୁର୍ଲଭ ।

ପଲ୍ଲୀର ଦାଣ୍ଡକୁ ମୁଖରିତ କରି ଆଉ ଭୀମ, କୀଚକର ଲଢ଼େଇ ହେଉନାହିଁ । ଡାଳ ବାହୁଙ୍ଗା ଖଣ୍ଡାଧରି ଦୁଇ ଦଳ ମଧ୍ୟରେ ସମାହିତ ଖେଳ, ଧୂଳିରେ ଗଡ଼ାଗଡ଼ି, ଘରକୁ ଫେରି ଆସିଲେ ମା'ର ପଣତକାନିରେ ମୁହଁ ପୋଛା ମଣିଷ ମନରୁ ଦୂରେଇ ଗଲାଣି । ସବୁ ଯେପରି ଖାପ୍‌ଛଡ଼ା ବୋଧ ହେଉଛି । କଙ୍କି ପଛରେ ଗୋଡ଼ାଇ କଙ୍କି ଧରିବା, କଙ୍କି ପଛରେ ସୂତା ବାନ୍ଧି କଙ୍କିକୁ ଉଡ଼ାଇବା, ଅନ୍ୟ ସାଥୀର ଆକଟ ''କଙ୍କି ଧରଣ, ମା ମରଣ'' ରେ ଜିଭ କାମୁଡ଼ି ପକାଇବା, ବାଇଗିଆ (ବାଇଗବା) ଡେମ୍ଫ ଭାଙ୍ଗି, ଫୁଙ୍କି ଫୋଟକା ଉଡ଼ାଇବା, ବର୍ଷାଦିନେ କାଗଜର ଡଙ୍ଗାକରି ପାଣି ସୁଅରେ ଭସାଇବା, ଗୋରୁ ଗୋଠର ପଛରେ ଯାଇ ଗଛରେ ଡ଼ାଳମାଙ୍କୁଡ଼ି ଖେଳିବା, ଧାନ ବିଲରୁ ଧାନ କେଣ୍ଡା ଚୋରି କରି ପଥର ଉପରେ କୁଟି ଚାଉଳ ବାହାର କରିବା, ଧାନକେଣ୍ଡାର ଶିସା ଆଣି ମୁଣ୍ଡରେ ଗାରକାଟି ରାମନାମ ଲେଖିବା, ପାଣି ସୁଅକୁ ବାଲି ବନ୍ଧରେ ଅଟକାଇ ବାଉଁଶ ନଳି ମଧ୍ୟ ଭାଗରେ ଦେଇ ଧୀରେ ଧୀରେ ପାଣି ଛାଡ଼ିବା, ଦୂର ପୋଖରୀରେ ବନିଶୀରେ ଜିଅଁଳ ଗୁଞ୍ଜି ଶେଉଳ ଧରିବା, ମାଛ ଡ଼ିଆଁ କରି ଚେଙ୍ଗ ଶେଉଳ ଧରିବା କ୍ରମଶଃ ପଲ୍ଲୀ ପରିବେଶରୁ ଲୁଚି ଗଲାଣି ।

ଲିଭିଗଲାଣି ଝିଅଙ୍କ କଣ୍ଠରୁ ବିବାହକାଳୀନ କାନ୍ଦଣାମାନ । ଦୀର୍ଘ କେତେବର୍ଷଧରି ଯେଉଁ ଘରେ ସେମାନେ ବଢ଼ିଛନ୍ତି, ପିତା, ମାତା, ଭାଇର ଗେଲବସରର ଝିଅ ଓ ଭଉଣୀ ହୋଇ ଆନନ୍ଦରେ ଦିନ କାଟିଛନ୍ତି, ଯେଉଁ ପଲ୍ଲୀଭୂମିରେ ଲୁଚକାଳି ତଥା ବୋହୂବୋହୂକା ଖେଳରେ ଅନେକ ସମୟ ବିତାଇଛନ୍ତି, ସେହି ଗାଁର ମଧୁର ସ୍ମୃତିକୁ ଛାଡ଼ି ଗଲାବେଳେ ତାଙ୍କ କଣ୍ଠନିସୃତ କାନ୍ଦଣା ଅଶ୍ରୁସିକ୍ତ କରେ ସାଥୀ, ସଙ୍ଗାତ, ମା, ମାଉସୀ, ଖୁଡ଼ୀ, ପିଉସୀ, ଆଈମାନଙ୍କ ଅନ୍ତରକୁ । ସେମାନେବି କଣ୍ଠ ଖୋଲି ଉଚ୍ଚ ସ୍ୱରରେ ସ୍ୱର ଧରି କାନ୍ଦନ୍ତି । ବାଦ୍ୟର ପ୍ରୟୋଜନ ନଥାଏ । ତାଳ, ଲୟଭରା କାନ୍ଦଣା । ଅକ୍ଷର ସଂଖ୍ୟା ଦୁଇପଦର ସମାନ ନହୋଇ ପାରେ, କିନ୍ତୁ ସେଥିରେ ଥାଏ ନୂତନ ଘର ପ୍ରତି, ବର ପ୍ରତି ତାଚ୍ଛଲ୍ୟ । ''ଛଅଟା ଲାଉଟ, ନଅଟା ବାଣ ହେ ବାପା, ଛତରା ଖୋଜୁଛି ଯୌତୁକ ଟାଣ ହେ ବାପା'' । ଯୌତୁକ ଦେବା ଲାଗି ବାପା ତାର ଅସମର୍ଥ । ଝିଅ ବୁଝୁଛି ବାପାର ବେଦନା । କିନ୍ତୁ ବର ଦାବୀ କରୁଛି ବହୁ ଯୌତୁକ । ତେଣୁ ବାପାକୁ ଧରି ଝିଅ କାନ୍ଦେ ''ଆଣ ବାଇଗିଆ ମାର ଫୋପଡ଼ ହେ ବାପା, ଆସି ବସିଲାଣି ଦନ୍ତା ମାକଡ଼ ହେ ବାପା'' ।

କୁଆଡ଼େ ଗଲା କିଶୋରୀ ମେଳର ସେ ଢଗ ଓ ନାଁ ଦିଆ ? ଚିଲଚି ବାହୁରୀ ବେଳରେ ପଘା, କଟକରୁ ଅଇଲା ଚୋକାଟାଏ, ଟା ମୁଣ୍ଡରେ ଟୋପିଟାଏର ଉତ୍ତର ଅତି ସହଜ । କିନ୍ତୁ କିଶୋରୀ ମେଳରେ ପ୍ରତିଯୋଗିତା ଲାଗେ । ବୟସ୍କା ସ୍ତ୍ରୀ ଲୋକଟିଏ ପହଞ୍ଚିଯାଏ । ଉତ୍ତର କହିଦିଏ, ପ୍ରଥମର ଉତ୍ତର ଛୁଞ୍ଚି ଓ ଦ୍ୱିତୀୟ ପ୍ରଶ୍ନର ଉତ୍ତର 'ତାଳ' । ଆଚ୍ଛା, ମୋ ପ୍ରଶ୍ନର ଉତ୍ତର କହିଲ ଦେଖି ? ଶଶୁର କୋଉଁ, ଶଳା ଉଣେଇ, ଆଜି ତିନିପଟ ଖାଇବେ କାହିଁ ? ଚାରିଜଣ, କେହି କାହା ସଙ୍ଗରେ ବସି ଖାଇବେ ନାହିଁ । କିଶୋରୀମାନଙ୍କର ଅକଲ୍ ଗୁଡୁମ୍ ହୋଇଯାଏ । ଚାରିଜଣ, ତିନିଟା ଥାଳିରେ ଖାଇବେ କିପରି ? ପାଖରେ ବସିଥାଏ ଭାଉଜ

ବୋହୂ । ନୂଆ ହୋଇ ଆସିଛି । ସେ ଟିକି ନଣନ୍ଦ ଦେହରେ ଆଙ୍ଗୁଠି ଖେଞ୍ଚି କହିଦିଏ, ଯିଏ ହୋଇଁ, ସେହି ପରା ଭିଣୋଇ । ତେଣୁ ତିନି ଜଣ, ତିନିଟା ଥାଳିରେ ଖାଉଥିବେ । ହାତତାଳି ଆଉ ହସରେ ଘରଟି ପୂରି ଉଠେ । ପୋଖରୀ ତୁଠକୁ ସାଙ୍ଗ ହୋଇ ଗାଧୋଇ ଯିବା, ମେଥିଗୁଣ୍ଡ ଦେଇ ମୁଣ୍ଡରେ କେଶ ଧୋଇବା, ମୁହଁରେ ହଳଦି ମାରି ତୁଠ ପଥର ଉପରେ ବସି ଟଳ ପାଣିକୁ ଚାହିଁ ପ୍ରତିବିମ୍ବ ଦେଖିବାର ଦୃଶ୍ୟ ଆଜି ଲୋପ ହୋଇଗଲାଣି । ତା ସ୍ଥାନ ପୂରଣ କରିଛି ସ୍ୟାମ୍ପୋ ଓ ସାବୁନ ।

ଶଗଡ଼ିଆ ଭାଇର ଶଗଡ଼ ଚଳାଇବା ବେଳେ ଗୀତର ଲହର, କୃଷକର ଶସ୍ୟକ୍ଷେତ୍ରରେ ହଳ ବୁଲାଇବା ବେଳେ ତାଳହୀନ ଗୀତ ମଧ୍ୟ ଆଜି ଲିଭି ଯାଉଛି ପଲ୍ଲୀ ଅଞ୍ଚଳରୁ ।

ସେହିପରି କାର୍ତ୍ତିକ ପୂର୍ଣ୍ଣମୀର 'ରାସ' ''ସପ୍ତା'' ପ୍ରଭୃତି ମଧ୍ୟ ଗାଁ ଗହଳରୁ କମିଗଲାଣି । ପଞ୍ଚକ ପାଞ୍ଚଦିନ ବାଉଁଶ ରଙ୍ଗ କାଠି, କାଉଁରିଆ ଘେରା କୁଞ୍ଜରେ ରାସ ଆବୃତ୍ତିକାର କଣ୍ଠରୁ ଭାସି ଆସେ, ''ସେ ମୋର ଭକତ ବିଶ୍ୱାସ, ମୁଁ ତାଙ୍କ ପୂରାଇବି ଆଶ'' ସହ ମୃଦଙ୍ଗ ଓ ଗିନିର ତାଳ ଭାସି ଆସୁନି । ଗ୍ରାମର ବିଭିନ୍ନ ସାହି ମଧ୍ୟରେ ଏହି ଧର୍ମଧାରାର ପ୍ରତିଯୋଗିତା ଦେଖାଦେଉନାହିଁ । କାର୍ତ୍ତିକ ମାସରେ ସପ୍ତା ସାତଦିନ ବସୁଥିଲା । ନଡ଼ିଆଗଛର ବାହୁଙ୍ଗାରେ ଏକ ଛାମୁଣ୍ଡିଆ ନିର୍ମିତ ହେଉଥିଲା । ନିମ୍ନ ଦେଶରେ ଭୂମି ଉପରେ ଏକ ବର୍ଗାକାର ଗାତ ଖୋଳାଯାଉଥିଲା । ସେଥିରେ ଦିବାରାତ୍ର କାଠ ରହି ଜଳୁଥିଲା । ଜଣେ ବକ୍ତା ଭାଗବତ ଆବୃତ୍ତି କରନ୍ତି ଆଉ ଜଣେ ଶ୍ରୋତା ବସି ଭାଗବତ ଶୁଣନ୍ତି । ସାତଦିନ ଉକ୍ତ କାର୍ଯ୍ୟକ୍ରମ ଚାଲେ ବୋଲି ଏହାର ନାମ ସପ୍ତା । ଶେଷଦିନ ହରିହାଟ ହୁଏ । ଗ୍ରାମବାସୀ ଏକତ୍ର ବସି ହରି ଭୋଜନରେ ନିଜକୁ ଆପ୍ୟାୟିତ କରନ୍ତି । ଯାହାକି ପରସ୍ପର ମଧ୍ୟରେ ଆତ୍ମୀୟତା ବୃଦ୍ଧି କରିବାରେ ସହାୟତା କରିଥାଏ । ଆଜି ଗ୍ରାମବାସୀମାନଙ୍କ ମଧ୍ୟରେ ସେ ଆତ୍ମୀୟତା ନାହିଁ । ଗୋଟିଏ ଗ୍ରାମ ମଧ୍ୟ ବିଭିନ୍ନ ସାହିରେ ବିଭକ୍ତ । ତେଣୁ ଏ ଧର୍ମର ପରମ୍ପରା ଆସ୍ତେ ଆସ୍ତେ କମି ଆସୁଛି ।

ଶୀତଦିନେ ଗାଁ ମଝିରେ ଧୁନି ଜଳି ଉଠୁନି, କି କିଛି ଗ୍ରାମବାସୀ ଏକତ୍ର ହୋଇ ନିଆଁ ପାଖରେ ବସି ପରସ୍ପରର ସୁଖ, ଦୁଃଖ ଆଲୋଚନା କରୁନାହାଁନ୍ତି । ସେହିପରି ମାଘମାସର ଅଗ୍ନିଉତ୍ସବ ମଧ୍ୟ ପୂର୍ବପ୍ରାୟ ପାଳିତ ହେଉନି । ଅଗ୍ନି ଚାରିପଟେ ଗ୍ରାମ୍ୟ କିଶୋରର ଶୃଙ୍ଖଳା ପିତାତରଡ଼ିରେ ନିଆଁ ଲଗାଇ ବୁଲାଇବାର ଦୃଶ୍ୟ ଦୃଷ୍ଟିଗୋଚର ହେଉନାହିଁ ।

ସବୁ ଅଛି, ପୁଣି କିଛି ନାହିଁ । ଯେଉଁ କିଛିଟା ଅଛି, ସେଥିରେ ଆତ୍ମୀୟତା ନାହିଁ । ସବୁ ଲୋକଦେଖାଣିଆ । ପରମ୍ପରାକୁ ରକ୍ଷା କରିବା ପାଇଁ ଏକ ବାଧ୍ୟବାଧକତାର ରୂପ । ଏହି ବିଶ୍ୱନିୟନ୍ତାଙ୍କ ସୃଷ୍ଟିରେ କେତେ କମନୀୟ ଜୀବ ଏହି ମନୁଷ୍ୟ । ଜୀବନ ତାର ଦୁର୍ଲଭ । ଅନ୍ୟ ପ୍ରାଣୀଠାରୁ ସେ ଶ୍ରେଷ୍ଠ । ସେ ଏକ ବିଚାରବୋଧଶୀଳ ଜୀବ । ଆତ୍ମୀୟତା ଓ ଅନ୍ତରଙ୍ଗତାର ସୁଅରେ ସେ ଭାସିଯିବା ଉଚିତ । ଅନ୍ୟର ସୁଖରେ ଆତ୍ମହରା, ଅନ୍ୟରେ ଦୁଃଖରେ 'ଆହା' କହିବା ପାଇଁ ତାର ସୃଷ୍ଟି । ସେ ପୁଣି ଭେଦ କରିଛି ନିଜକୁ ଦୁଇ ଭାଗରେ । ଗୋଟିଏ ସହରୀ ମଣିଷ ଅନ୍ୟଟି ଗ୍ରାମୀଣ ମଣିଷ । ଦୁଇଟି ସ୍ଥାନର ଚଳଣି, ସଂସ୍କୃତି ବି ଭିନ୍ନ ରୂପ ନେଇଛି । ସହରୀ ମଣିଷ ନିଜକୁ ଚିନ୍ତା କରିଛି ଉନ୍ନତ ବୋଲି ।

ଉଭୟ ସ୍ଥାନର ମଣିଷ ଭିତରେ ରହିଛି ଏହି ଉତ୍ସବ ତଥା ଧର୍ମ-ଧାରାର ରକ୍ତ । କିନ୍ତୁ ଏସବୁ ମଳିନ ପଡ଼ିଗଲେ ମଣିଷର ମାନବିକତା କ୍ରମଶଃ ଲୋପ ପାଇଯିବ । ତେଣୁ ସମାଜରେ ଆମର ଯାହା ପ୍ରଚଳିତ ଥିଲା, ସେସବୁର ରକ୍ଷା କରିବାର ଦାୟିତ୍ୱ ଆମ୍ଭମାନଙ୍କର । ପଲ୍ଲୀର ନିରାଡ଼ମ୍ବର, ସରଳ ଜୀବନ ମଧ୍ୟରେ ଏପରି ଅନେକ ଜିନିଷ ଲୁଚି ରହିଛି, ଯାହାକି ସହରୀ ଚାକଚକ୍ୟ ଜୀବନ ଭିତରେ ନାହିଁ । ସେହିପରି ସହରର ବହୁ ଚାକଚକ୍ୟ ଆଡ଼ମ୍ବରପୂର୍ଣ୍ଣ ଜୀବନ ମଧ୍ୟରେ ଅନେକ ଜିନିଷ ଅଛି, ଯାହାକି ପଲ୍ଲୀ ଅଞ୍ଚଳରୁ ପରିଦୃଷ୍ଟ ହୁଏ ନାହିଁ ।

ତେଣୁ ଯାହା କାଲିଥିଲା, ତାହାର ନବୀକରଣ ରୂପ ଆଜି କରାଯାଇପାରେ । ଯେପରି ଚାଟଶାଳୀରୁ କଳାପଟା ଅଭିଯାନ ବା ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ । କିନ୍ତୁ ଗତକାଲିକୁ ଭୁଲିବା ଅର୍ଥ ଆମର ପିତୃପୁରୁଷକୁ ଭୁଲିବା । ମୂଳଦୁଆ ଛାଡ଼ି ଘରର ସ୍ଥିତି ନାହିଁ କି ବାପାକୁ ଛାଡ଼ି ପୁଅ, ଝିଅର ସ୍ଥିତି ନାହିଁ । ତେଣୁ କାଲିକୁ ମନେ ରଖିଲେ ଆଜି ତା ବାଟରେ ଚାଲିବ ।

ସାଲେପୁର ମହାବିଦ୍ୟାଳୟ
ସାଲେପୁର, କଟକ

## ସୂଚନା ଓ ଲୋକସମ୍ପର୍କ ବିଭାଗର କର୍ମଚାରୀ କଲ୍ୟାଣ କମିଟି ନିର୍ବାଚନ

ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ କର୍ମଚାରୀ କଲ୍ୟାଣ କମିଟିର ନିର୍ବାଚନ ଅନୁଷ୍ଠିତ ହୋଇଯାଇଛି । ଏହି ନିର୍ବାଚନରେ ଶ୍ରୀ ଶ୍ୟାମ ସୁନ୍ଦର ନାୟକ ସଭାପତି, ଶ୍ରୀ ସଚ୍ଚିଦାନନ୍ଦ ବେହେରା ସାଧାରଣ ସଂପାଦକ, ଡ଼ଃ ଗଙ୍ଗାଧର ମଲ୍ଲିକ ଯୁଗ୍ମ ସଂପାଦକ, ଶ୍ରୀ ମାଧବାନନ୍ଦ ସ୍ୱାଇଁ ସାଂସ୍କୃତିକ ସଂପାଦକ, ଶ୍ରୀ ପ୍ରଦୀପ କୁମାର ମହାନ୍ତି କ୍ରୀଡ଼ା ସଂପାଦକ ଓ ଶ୍ରୀ ବିଜୟ କୁମାର ଭଦ୍ର କଲ୍ୟାଣ ସଂପାଦକ ଭାବରେ ନିର୍ବାଚିତ ହୋଇଥିବା ବେଳେ ଶ୍ରୀ ଗଜେନ୍ଦ୍ର ପାତ୍ର ଉପସଭାପତି, ଶ୍ରୀ ଯଜ୍ଞସେନ ରାଉତ କୋଷାଧ୍ୟକ୍ଷ ଓ ଶ୍ରୀ ଦୁଃଖୀଶ୍ୟାମ ନନ୍ଦ ସମୀକ୍ଷକ ଭାବରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛନ୍ତି ।

ବିଭାଗୀୟ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ମେଘନାଦ ହୁହୁ ଏହି ନିର୍ବାଚନରେ ପର୍ଯ୍ୟବେକ୍ଷକ ଥିବା ବେଳେ ଉପ ବିଭାଗ ଅଧିକାରୀ ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ ନିର୍ବାଚନ ପରିଚାଳନା କରିଥିଲେ । ସହ ସୂଚନା ଅଧିକାରୀ ଶ୍ରୀ ସନ୍ତୋଷ କୁମାର ଦାସ ତାଙ୍କୁ ସହାୟତା କରିଥିଲେ ।

# ଏଇ ସ୍ୱାଧୀନତା ମୁକ୍ତି ଟିକକ ପାଇଁ

ଶ୍ରୀ କୈଳାସ ତ୍ରିପାଠୀ

ଏଇ ସ୍ୱାଧୀନତା ମୁକ୍ତି ଟିକକ ପାଇଁ
କେତେ ଦୁର୍ବାର ଅଗ୍ନି ପଥରେ ଧାଇଁ,
କେତେ ଯନ୍ତ୍ରଣା କେତେ ଯେ ନିର୍ଯ୍ୟାତନା
ପାଇଛୁ, ଲେଖିଛୁ ରକ୍ତର ଆଳାପନା ।
ସ୍ୱରାଜ ପାଇଁକି କେତେ ଯେ ମଣିଷ ମୁଣ୍ଡ
ମିଶିଛି ମାଟିରେ ସଢ଼ିଛି କେତେ ଯେ ପିଣ୍ଡ ।
କାରାକକ୍ଷରେ, ବକ୍ଷେ ବୁଲେଟ ତୋଳି
ମରିଛ କାହାନ୍ତି ଦେଇ ଯେ ଆତ୍ମବଳି ।
ପାଣୀ ଖୁଣ୍ଟରେ ଝୁଲିଛି କେତେ ଯେ ଶବ
ହିସାବ କି ତାର କେଉଁ ଇତିହାସ ହବ ?
କେତେ ଯେ ଗାନ୍ଧୀ, ତିଳକ, ଭଗତ ସିଂହ
ଭକାମ ଭଳି କେତେ ଯେ ଅନାମ ସିଂହ ।
ଶୋଣିତ ମିଶିଛି ମାଟି ମାତୃକା ବୁକେ
ସତଚାଳିଶର ଶେଷ ଶର୍ବରୀ ଯାକେ ।
ଶୃଙ୍ଖଳ ଯାଇ ଫିଟିଲା ତା ପରେ ଦିନେ
ମୁକ୍ତି ମନ୍ତ୍ର ଶୁଭିଲା ଆମରି କାନେ ।
ବ୍ରିଟିଶ ବଣିକ ଦରିଆ ସେପାରି ଗଲା
ସ୍ୱଦେଶ ଆମର ସେଦିନ ସ୍ୱାଧୀନ ହେଲା ।
'ଜ୍ୟାକ୍' ଲୁଚିଲା ଉଡ଼ିଲା ଜାତିର ଧ୍ୱଜା
ଆମେ ତ ସାଜିଲୁ ଆମରି ଦେଶର ରାଜା ।
ସାର୍ଥକ ହେଲା ରାମରାଜ୍ୟର ସ୍ୱପ୍ନ
କିଏ ଜାଣିଥିଲା ସେଇ ହବ ଦିବାସ୍ୱପ୍ନ ।
ଶୋଷଣ କଷଣ ଜଘ୍ନ୍ୟତନର ଅଙ୍କ
ଜାତି-ବିଜାତିର ବିଭେଦ କଳୁଷ-ପଙ୍କ ।
ବାହୁକ ଭାତିର ଅବାଡ ସେ ଅପଦୃଶ୍ୟ
ଧନୀ-ନିର୍ଧନ ଧର୍ମ-ବିଷମ ଦୃଶ୍ୟ ।

ନାଟକ ନୋହିବ ନିଃଶେଷ କେବେ ଏଠି
ଘୁଞ୍ଚିବ ନାହିଁ ଗରିବ ମଣିଷ ବେଠି ।
ଛାୟାଯୌବନ ନିଲାମ ନୋହିବ ଅନ୍ତ
ଧର୍ଷଣ ହବ ଅହର୍ନିଶିର ତନ୍ତ୍ର ।
ରାଜନୀତି ହବ ଅରାଜନୀତିର ଖେଳ
ସ୍ୱାର୍ଥ ସାଜିବ ଜୀବନର ଅଟକଳ ।
କାହା ରୁଧିରରେ କିଏ ସେ ଲେଖିବ କାବ୍ୟ
ସଫେଦ ଖୋଳରେ ବର୍ବର ଅପସଭ୍ୟ ।
କାଞ୍ଚନ ଆଉ କାମିନୀ ଯାହାର ନିଶା
ତସ୍କରି କରି ଯାବଜ୍ଜୀବନ ପେଶା ।
ସେଇ ତ ସାଜିବ ସ୍ୱାଧୀନ ଦେଶର ଧାତା
ତା' ହାତେ ରହିବ ଆମ ଭାଗ୍ୟର ଖାତା !
ଲୋକ ବିକଳରେ ରାସ୍ତାଘାଟରେ ପଡ଼ି
ଆମେ ଯାଉଥିବା ଅକାଳେ ସକାଳେ ଝଡ଼ି
ଚିତ୍କାର କାହା କାନରେ ପଡ଼ିବ ନାହିଁ
ନ୍ୟାୟ ଅନ୍ୟାୟ ଶବଦରେ ଯିବ ରହି ।
କିଏ ସେ ଛୁଇଁବ ହାତରେ ଆକାଶ ଛାତି
ଫୁଟପାଥ୍ ଧାରେ କଟିବ କାହାର ରାତି ।
ଏଇ ଅଧିକାର ମିଳିବ ଆମକୁ ଯାହା
ଦୁଃଖ ଦାରୁଣ ଅଗ୍ନିରେ ହେବୁ ସ୍ୱାହା ।
ଉଠିଲେ ପ୍ରଶ୍ନ ଆମେ କି ସ୍ୱାଧୀନ ଆଜି
ଏଇ ଉତ୍ତର ମନରେ ଉଠଇ ବାଜି ।

କଳ୍ପନାଲୋକ
କ୍ୱା : ନଂ ୩/୨ - ଆଇ.ଭି-ବି.
ୟୁନିଟ୍- ୩, ଖାରବେଳନଗର
ଭୁବନେଶ୍ୱର ।

# ଗୋବିନ୍ଦପୁର ଶିଳାଲେଖ

ଅଧ୍ୟାପିକା ଗୀତା ଦେବୀ

ନୟାଗଡ଼ ଖଣ୍ଡପଡ଼ା ରାସ୍ତାର ବାରବାଟୀଠାରୁ ତିନି କି.ମି. ପୂର୍ବକୁ ଗୋବିନ୍ଦପୁର ଗ୍ରାମ ପରିସରରେ କାଉଁରି ମନ୍ଦିର ଅବସ୍ଥିତ । କାଉଁରି ମନ୍ଦିର ବେଢ଼ା ମଧ୍ୟରେ ଦୁଇଟି ପୁରାତନ ଶିବ ମନ୍ଦିର (କେଦାରେଶ୍ୱର, ସୋମନାଥ) ଦେଖାଯାଏ । କେଦାରେଶ୍ୱର ମନ୍ଦିରର ପଶ୍ଚିମ ପାର୍ଶ୍ୱ କାନ୍ଥରେ ଏକ ଶିଳାଲିପି ପ୍ରଥମେ ପଣ୍ଡିତ ବିନାୟକ ମିଶ୍ର ଆବିଷ୍କାର କଲେ ଏବଂ ଏହାର ପ୍ରତିଲିପି ତାଙ୍କର ପୁସ୍ତକ 'Orissa under the Bhauma Kings' (ପୃ.୭୪) ରେ ପ୍ରକାଶ କଲେ ।

ଏହି କ୍ଷୁଦ୍ର ଲେଖଟିକୁ ପଣ୍ଡିତ ମିଶ୍ର ସଂପାଦନା କରିନଥିଲେ । କିନ୍ତୁ ଏଥିରୁ ଯେଉଁ ପାଠୋଦ୍ଧାର କରିଥିଲେ ତହିଁରେ ଏକ ନାମ 'ଶ୍ରୀ ରଣକେଶରୀ ଦେବ' ଏବଂ ଏକ ସଂଖ୍ୟା '୮୧୧'ର ସନ୍ଧାନ ପାଇଥିଲେ । '୮୧୧'କୁ ପଣ୍ଡିତ ମିଶ୍ର 'ଶକାବ୍ଦ' ମନେକରି ଶିଳାଲେଖର ସମୟ ୮୮୯ଖ୍ରୀ: ବୋଲି ଗ୍ରହଣ କରିଛନ୍ତି । 'ଶ୍ରୀ ରଣକେଶରୀ ଦେବ' ଙ୍କୁ ସୋମବଂଶୀ ରାଜା ବାନାର୍ଜୁନ ମହାଶିବ ଗୁପ୍ତଙ୍କ ସାନଭାଇ ରଣକେଶରୀଙ୍କ ସହ ଚିହ୍ନଟ କରିଅଛନ୍ତି । (Pt. Binayak Mishra, Dynasties of Medieval Orissa, P.74)

ଡ଼: ଡ଼ି.ସି. ସରକାର ପଣ୍ଡିତ ମିଶ୍ରଙ୍କ ପାଠୋଦ୍ଧାରକୁ ସମର୍ଥନ କରନ୍ତି । କିନ୍ତୁ '୮୧୧' ପରିବର୍ତ୍ତେ ସଂଖ୍ୟାଟିକୁ ସେ '୬୧୧' ପାଠ କରିଛନ୍ତି ଏବଂ ଏହାକୁ 'ଶକାବ୍ଦ' ପରିବର୍ତ୍ତେ ଗଙ୍ଗାବ୍ଦ ମନେକରି ଶିଳାଲେଖର ସମୟକାଳ ୧୧୦୭-୦୯ ଖ୍ରୀଷ୍ଟାବ୍ଦ ବୋଲି ନିରୂପଣ କରିଛନ୍ତି । (Chronology of the Bhaumakaras and Somavamsis of Orissa, Dr. K.C. Panigrahi, P. 57)

ଡ଼: ସତ୍ୟନାରାୟଣ ରାଜଗୁରୁ, 'Orissa under the Bhauma kings' ପୁସ୍ତକରେ ସନ୍ନିବେଶିତ ପ୍ରତିଲିପିକୁ ନିମ୍ନମତେ ସଂପାଦନା କରିଛନ୍ତି । (Dr. S.N. Rajguru, Imscriptions of orissa (IV), p. 296)

ପ୍ରଥମ ଧାଡ଼ି - "ଶ୍ରୀ ରଣ (କେ) -

ଦ୍ୱିତୀୟ ଧାଡ଼ି - ସ (ଶ) ରୀ ଦେବସ୍ୟ ବିଜୟ ରାଜ୍ୟେ

ତୃତୀୟ ଧାଡ଼ି - ୫୮ ମାଘ, ବ, ଦୀ (ଦି) ୧୦, ପୁରୁଥିରେ ଧ-

ନାମ - ଶ୍ରୀ ରଣକେଶରୀ ଦେବ

ତାରିଖ - ବିଜୟ ରାଜ୍ୟ ୫୮, ମାଘ, କୃଷ୍ଣପକ୍ଷ ଦଶଦିନ

ରାଜଗୁରୁ ମହାଶୟ ତାଙ୍କ ସଂପାଦନାରେ ତୃତୀୟ ଧାଡ଼ି ଶେଷରେ ଥିବା 'ପୁରୁଥିରେ ଧ' ର କୌଣସି ଅର୍ଥ ଦେଇ ନାହାଁନ୍ତି ।

କିନ୍ତୁ ଡ଼: ରାଜଗୁରୁ ରଣକେଶରୀ ଦେବଙ୍କୁ ସୋମବଂଶୀ ରାଜା ମହାଶିବ ଗୁପ୍ତ ବାନାର୍ଜୁନଙ୍କ ଭାଇ ବୋଲି ଚିହ୍ନଟ କରିବା ପାଇଁ କୁଣ୍ଠାବୋଧ କରିଅଛନ୍ତି । କାରଣ ଶ୍ରୀପୁର ଶିଳାଲେଖ (ମହାଶିବଗୁପ୍ତ ବାନାର୍ଜୁନ) ଲିପି ଏବଂ ଗୋବିନ୍ଦପୁର ଶିଳାଲେଖ ଲିପିର ଲେଖନ ଶୈଳୀରେ ସେ ମହାଶୟ ଅନ୍ୟୂନ ୨୦୦/୩୦୦ ବର୍ଷର ବ୍ୟବଧାନ ଥିବାର ଅନୁମାନ କରୁଛନ୍ତି । (Dr. S.N. Rajguru, P. 297)

ରାଜଗୁରୁ ମହାଶୟ ଲିପିତତ୍ତ୍ୱ ଦୃଷ୍ଟିରୁ ବିଚାର କରି ଏହି ଶିଳାଲେଖଟିକୁ ଏକାଦଶ ଶତାବ୍ଦୀରେ ସ୍ଥାପିତ କରୁଅଛନ୍ତି । ପୁନଶ୍ଚ ଉକ୍ତ ଶିଳାଲେଖରେ ଶ୍ରୀ ରଣକେଶରୀ ଦେବଙ୍କ ନାମ ପୂର୍ବରୁ କୌଣସି ପ୍ରଶସ୍ତି ନଥିବାରୁ ତାଙ୍କୁ ସୋମବଂଶୀ ଶାସକ ହିସାବରେ ଗ୍ରହଣ କରିବାକୁ ପଶ୍ଚାତପଦ ହେଉଅଛନ୍ତି । ତଥାପି କେଦାରେଶ୍ୱର ମନ୍ଦିରର ମରାମତି ସମୟରେ ଏ ପ୍ରଶସ୍ତି ନଷ୍ଟ ହୋଇଯାଇଥିବାର ବା ଲୁଚିଯାଇ ପାରିଥିବାର ସମ୍ଭାବନାକୁ ସେ ଏଡ଼ାଇ ଦେଇ ପାରିନାହାଁନ୍ତି । (Dr. S.N. Rajguru, P. 298)

ପଣ୍ଡିତ ବିନାୟକ ମିଶ୍ରଙ୍କର ମୂଳ ପ୍ରତିଲିପି ସାହାଯ୍ୟରେ ଡ଼: କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଶିଳାଲେଖଟିର ସଂପାଦନା ନିମ୍ନମତେ କରିଛନ୍ତି । (Dr. K.C. Panigrahi, P. 57)

ପ୍ରଥମ ଧାଡ଼ି - ଶ୍ରୀ ଉଦ୍ୟତ - କେ

ଦ୍ୱିତୀୟ ଧାଡ଼ି - ସ (ଶ) ରୀ - ଦେବସ୍ୟ ବିଜୟ ରାଜ୍ୟେ

ତୃତୀୟ ଧାଡ଼ି - ଅମୀୟମ୍ ଖୋଦିତମ୍ ପୁସ୍କ (ଷ୍କ) ରିନମ୍

ଅନୁବାଦ - ଶ୍ରୀ ଉଦ୍ୟତ କେଶରୀ ଦେବଙ୍କର ବିଜୟ ରାଜତ୍ୱରେ (ଏହି) ମଧୁମୟ ପୁଷ୍କରିଣୀ ଖୋଦିତ ହୋଇଥିଲା ।

ପ୍ରକାଶ ଥାଉକି ସୋମନାଥ, କେଦାରେଶ୍ୱର ମନ୍ଦିର ପରିସରରେ ଏକ କ୍ଷୁଦ୍ର ମଧୁର ଜଳପୂର୍ଣ୍ଣ ପୁଷ୍କରିଣୀ ବିଦ୍ୟମାନ । ଏହାର ସ୍ଥାନୀୟ ନାମ 'ଶାମୁକା' ।

ତା ୧୮-୧୧-୯୪ ରିଖରେ ଏ ପ୍ରବନ୍ଧର ଲେଖିକା କେଦାରେଶ୍ୱର ମନ୍ଦିରକୁ ଯାଇ କବାଟ ଫାଙ୍କରେ ପଡୁଥିବା ସଂକୀର୍ଣ୍ଣ ସୂର୍ଯ୍ୟ ରଶ୍ମିରେ ପ୍ରଥମ ଧାଡ଼ିର ଗୋଟିଏ ମାତ୍ର ଶବ୍ଦ 'ଉଦ୍ୟୋତ' ପାଠ କରିବାକୁ ସମର୍ଥ ହୋଇଥିଲା । ଏଥିରୁ ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପାଠ ସଠିକ ଥିବାର ମନେହୁଏ । ତଦନୁସାରେ ଉକ୍ତ ପୁଷ୍କରିଣୀଟି ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କ ସମୟରେ ଖୋଦିତ ହୋଇଥିବା ଅଧିକ ସଙ୍ଗତ ମନେହୁଏ ।

ଡ଼ଃ ରାଜଗୁରୁ ଲିପିତତ୍ତ୍ୱ ଦୃଷ୍ଟିରୁ ଶିଳାଲେଖଟିକୁ ଏକାଦଶ ଶତାବ୍ଦୀର ବୋଲି ମନେ କରୁଅଛନ୍ତି । ପ୍ରକାଶ ଥାଉକି ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କ ସମୟ ଏକାଦଶ ଶତାବ୍ଦୀର ଅନ୍ତର୍ଭୁକ୍ତ ।

କିନ୍ତୁ ଡ଼ଃ ରାଜଗୁରୁ ଶିଳାଲେଖଟିରେ ସୋମବଂଶୀ ପ୍ରଶସ୍ତି ନଥିବାରୁ ଏହା ସୋମବଂଶୀ ଶିଳାଲେଖ ନହୋଇ ଥାଇପାରେ ବୋଲି ଆଶଙ୍କା ପ୍ରକାଶ କରିଅଛନ୍ତି । ବର୍ତ୍ତମାନ ଏ ପର୍ଯ୍ୟନ୍ତ ମିଳିଥିବା ଉଦ୍ୟୋତକେଶରୀଙ୍କର ଦୁଇଗୋଟି ଶିଳାଲେଖକୁ ବିଚାର କରାଯାଇପାରେ । ଏହା ହେଲା ଖଣ୍ଡଗିରି ପାହାଡ଼ର ଲଲାଟେନ୍ଦୁ କେଶରୀ ଗୁମ୍ଫା ଏବଂ ନବମୁନି ଗୁମ୍ଫା ମଧ୍ୟରେ ଖୋଦିତ ଦୁଇଟି ଶିଳାଲେଖ ।

ଲଲାଟେନ୍ଦୁ କେଶରୀ ଗୁମ୍ଫାର ଶିଳାଲେଖଟିକୁ ଡ଼ଃ ରାଜଗୁରୁ ନିମ୍ନମତେ ସଂପାଦିତ କରିଛନ୍ତି । (Dr. S.N. Rajguru P. 237)

୧-ଓଁ ଶ୍ରୀ ଉଦ୍ୟୋତ କେଶରୀ ବିଜୟ ରାଜ୍ୟ ସମ୍ବତ୍ ୫

୨- ଶ୍ରୀ କୁମାର ପର୍ବ୍ବ (ର୍ବ)ତ ସ୍ଥାନେ ଜି (ର୍ଜୀ)ନ (ର୍ଣ୍ଣ) ବାପୀ ଜିର୍ଣ୍ଣ ଉଣ

୩- .......

ନବମୁନି ଗୁମ୍ଫାରେ ଥିବା ଶିଳାଲେଖଟି ମଧ୍ୟ ନିମ୍ନ ପ୍ରକାରେ ରାଜଗୁରୁ ମହାଶୟଙ୍କ ଦ୍ୱାରା ପଠିତ ହୋଇଅଛି । (Dr. S.N. Rajguru, P. 242-43)

୧-ଓଁ ଶ୍ରୀ ଉଦ୍ୟୋତ କେଶରୀ ବିଜୟ ରାଜ୍ୟ ସମ୍ବତ୍ ୫

୨-.......

୩-........

୪-......

୫.-......

ଲକ୍ଷ୍ୟ କରିବାର ବିଷୟ ଏହିକି ଯେ ଉଦ୍ୟୋତ କେଶରୀଙ୍କ ଉକ୍ତ ଦୁଇଗୋଟି ଶିଳାଲେଖ ଗୋବିନ୍ଦପୁର ଶିଳାଲେଖର ଅନୁରୂପ । ଏହା ମଧ୍ୟ ପ୍ରଶସ୍ତି ବିହୀନ । ପୁନରାୟ ଲଲାଟେନ୍ଦୁ କେଶରୀ ଗୁମ୍ଫାରେ, ଜୀର୍ଣ୍ଣ ବାପୀର ଉଦ୍ଧାର କାର୍ଯ୍ୟ କରାଯାଇଅଛି । ଏଥିରୁ ମନେହୁଏ ଉଦ୍ୟୋତକେଶରୀ ଦେବସ୍ଥାନ ବା ସତ୍‌ସଙ୍ଗ ବିହାରମାନଙ୍କରେ ନୂତନ ବାପୀ ଖନନ କରୁଥିଲେ ଅଥବା ଜୀର୍ଣ୍ଣ ସଂସ୍କାର କରୁଥିଲେ । କିନ୍ତୁ ଗୋବିନ୍ଦପୁର ଶିଳାଲେଖର ଏକ ବ୍ୟତିକ୍ରମ ହେଲା ଉଦ୍ୟୋତ କେଶରୀଙ୍କ ରାଜତ୍ୱ ଅଙ୍କର ଅନୁପସ୍ଥିତି । ରାଜଗୁରୁ ମହାଶୟ ଲେଖର 'ପ୍ରଶସ୍ତି' ମନ୍ଦିର ମରାମତି ସମୟରେ ନଷ୍ଟ ହୋଇ ଯାଇଥିବାର ଯେପରି ଅନୁମାନ କରୁଛନ୍ତି, ଏହାର ସମ୍ବତ ଅଂଶଟି ଠିକ ତୃତୀୟ ଧାଡ଼ି ଆରମ୍ଭରୁ (ଅମୀୟମ୍ ପୂର୍ବରୁ) ମନ୍ଦିର ମରାମତି ସମୟରେ ନଷ୍ଟ ହୋଇ ଯାଇଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ।

ଏ ସମସ୍ତ ଆଲୋଚନାରୁ ଏହି ସିଦ୍ଧାନ୍ତ ଗ୍ରହଣ କରାଯାଇପାରେ ଯେ ଏକାଦଶ ଶତାବ୍ଦୀରେ ଗୋବିନ୍ଦପୁର ମନ୍ଦିର ପରିସରରେ ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କ ଦ୍ୱାରା ଏକ ପୁଷ୍କରିଣୀ ଖୋଦିତ ହୋଇଥିଲା । ଅତଏବ ଏକାଦଶ ଶତାବ୍ଦୀରେ ଆଧୁନିକ ନୟାଗଡ଼ର କେତେକାଂଶ ସୋମବଂଶୀ ରାଜାମାନଙ୍କର ରାଜ୍ୟାନ୍ତର୍ଗତ ଥିବାର ଜଣାପଡ଼େ । ଅବଶ୍ୟ ସୋମବଂଶୀ ମାନଙ୍କର ବିଭିନ୍ନ ଶାସନକେନ୍ଦ୍ର ଯଥା ଯାଜପୁର, ଭୁବନେଶ୍ୱର ତଥା ସୋନପୁର ଓ ବୌଦ୍ଧ ର ଅନ୍ତବର୍ତ୍ତୀ ଅଞ୍ଚଳରେ ନୟାଗଡ଼ର ଅବସ୍ଥିତି ।

ନୟାଗଡ଼ କଲେଜ
ପୋ. ନୟାଗଡ଼
ପିନ- ୭୫୨ ୦୬୯

—0—

# ଉପଭୋକ୍ତା ସୂଚନା କେନ୍ଦ୍ର

ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି

ସୂଚନା (Information) ମାନବୀୟ କାର୍ଯ୍ୟକଳାପ ଓ ଘଟଣାମାନଙ୍କରୁ ଉଦ୍ଭବ ହୋଇଥାଏ । ଏହାର ଉଦ୍ଭବରେ ବ୍ୟକ୍ତି ବିଶେଷ ତଥା ଅନୁଷ୍ଠାନ ସମୂହ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି ।[୧] ସବୁପ୍ରକାର ସୂଚନାକୁ ସାଇତି ରଖିବା ସମ୍ଭବ ନ ହୋଇ ପାରିଲେ ମଧ୍ୟ କେତେକ ଉପାଦେୟ ଓ ସଂପର୍କୀୟ ସୂଚନାକୁ ବ୍ୟକ୍ତିବିଶେଷ କିମ୍ବା ଅନୁଷ୍ଠାନ ସମୂହ ଜନସାଧାରଣ ତଥା ଗବେଷକଙ୍କ ପାଇଁ ସାଇତି ରଖନ୍ତି । ସୂଚନାକୁ ସଂପ୍ରତି ଅନ୍ୟ ସମ୍ବଳ (resource) ମାନଙ୍କ ପରି ମାନ୍ୟତା ଦିଆଯାଉଛି । ଯେଉଁ ଦେଶ ବା ବ୍ୟକ୍ତି ଉପାଦେୟ ସୂଚନା ରଖିବାରେ ଦକ୍ଷ ବା ନିପୁଣ, ସେମାନେ ନିଜକୁ କ୍ଷମତାଶାଳୀ ବୋଲି ଭାବୁଛନ୍ତି ।[୨] ଏହି ଚିନ୍ତନକୁ ଆଖି ଆଗରେ ରଖି, ସମସ୍ତ ଲୋକେ କିପରି ସେମାନଙ୍କର ଚାହିଦା ମୁତାବକ ଉପାଦେୟ ସୂଚନା ପାଇପାରିବେ, ଉପଭୋକ୍ତାମାନଙ୍କ ମଧ୍ୟରେ କିପରି ସୂଚନାର ସୁବଣ୍ଟନ ହୋଇପାରିବ, ସେଥିପାଇଁ ଗୁରୁତ୍ୱ ଦିଆଯାଉଛି । ଜନମଙ୍ଗଳ ରାଷ୍ଟ୍ରମାନେ ଜନତାର ମଙ୍ଗଳ ପାଇଁ ଯେତେପ୍ରକାର ପଦକ୍ଷେପ ନେଉଛନ୍ତି, ସେଥିମଧ୍ୟରୁ ଉପଭୋକ୍ତା ସୂଚନା କେନ୍ଦ୍ର ପ୍ରତିଷ୍ଠା କରିବା ହେଉଛି ଅନ୍ୟତମ । ଭାରତ ସରକାରଙ୍କ ଉପଭୋକ୍ତା ବା ଖାଉଟି ବ୍ୟାପାର ଏବଂ ସର୍ବସାଧାରଣ ବଣ୍ଟନ ବିଭାଗ (Department of consumer affairs and Public Distribution) ଏପରି କେନ୍ଦ୍ରମାନଙ୍କୁ ଦେଶର ବିଭିନ୍ନ ଭାଗରେ ପ୍ରତିଷ୍ଠା କରିବାକୁ ପ୍ରସ୍ତାବ ଦେଇଅଛି । ଉକ୍ତ ଲେଖାଟି ସେହି ପ୍ରସ୍ତାବର ଏକ ସଂକ୍ଷିପ୍ତ ରୂପ ଧାରଣ କରିଛି ।[୩]

ଖାଉଟି ବା ଉପଭୋକ୍ତାମାନଙ୍କର ମୌଳିକ ଅଧିକାର ମଧ୍ୟରେ ନିଜେ ସୂଚନାରେ ଅବଗତ ହେବା (Right to be Informed) ଅନ୍ୟତମ । ଏହା ୧୯୮୬ ମସିହାରେ ଖାଉଟି ସୁରକ୍ଷା ଆଇନ (Consumer Protection Act, 1986) ରେ ସ୍ୱୀକୃତି ଲାଭ କରିଛି । ଏହି ଆଇନ ଅଧୀନରେ ପ୍ରତିଷ୍ଠା ହୋଇଥିବା କେନ୍ଦ୍ରୀୟ ଉପଭୋକ୍ତା ସୁରକ୍ଷା ପରିଷଦ (Central Consumer Protection Council)ର ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହ ଉପଭୋକ୍ତାମାନଙ୍କୁ ସୂଚନାରେ ଅବଗତ କରାଇବା ଅଧିକାରକୁ ଉନ୍ନତ ଓ ସୁରକ୍ଷା କରିବା ପାଇଁ ଲକ୍ଷ୍ୟ ଅଛି । ସଂପ୍ରତି ସୂଚନା ଅଧିକାର ମଧ୍ୟ ସରକାରଙ୍କ ସବିଶେଷ ଦୃଷ୍ଟି ଆକର୍ଷଣ କରିଛି । ତେଣୁକରି, ତାମିଲନାଡୁ ସରକାର ରାଜ୍ୟ ବିଧାନ ସଭାରେ ତାମିଲନାଡୁ ସୂଚନା ଅଧିକାର ନିୟମ, ୧୯୯୭ ନାମକ ଏକ ଇସ୍ତାହାର (Bill) ପ୍ରଚଳିତ କରିଛନ୍ତି ।[୪] ଏହି ପ୍ରସଙ୍ଗରେ, ଉପଭୋକ୍ତା ସୂଚନା କେନ୍ଦ୍ରମାନ ଯାହା ଉପଭୋକ୍ତାମାନଙ୍କୁ ଉପଯୁକ୍ତ ସୂଚନା ଦେଇ ପାରିବ - ସେପରି କେନ୍ଦ୍ରଗୁଡ଼ିକୁ ପ୍ରତିଷ୍ଠା କରିବା ପାଇଁ ପ୍ରସ୍ତାବମାନ ଦିଆଯାଇଛି ।

ଭାରତ ସରକାରଙ୍କ ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର (National Informatic Centre) ପର୍ଯ୍ୟାପ୍ତ ପରିମାଣର ସୂଚନାକୁ ଗଚ୍ଛିତ କରି ରଖିଛି ଓ ନୂଆ ନୂଆ ସୂଚନାକୁ ମଧ୍ୟ ଗଚ୍ଛିତ କରୁଅଛି । ଏହି କେନ୍ଦ୍ର GISTNIC (General Information System Terminal of National informatic Centre) ନାମକ ଏକ କାର୍ଯ୍ୟକ୍ରମ ମାଧ୍ୟମରେ ଅନେକ ଦରକାରୀ ସୂଚନା ଗଚ୍ଛିତ କରି ରଖିଅଛି । ଏସବୁ ସୂଚନା ସବୁ ଜିଲ୍ଲାର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ମିଳିପାରୁଛି । କିନ୍ତୁ ସତ୍ୟ ଏହି ଯେ ଅନେକ ଏ ବିଷୟରେ ଜାଣନ୍ତି ନାହିଁ । ସର୍ବସାଧାରଣ ସେବାକୁ GISTNIC ରେ ଅନ୍ତର୍ଭୁକ୍ତ କରିବା ପାଇଁ ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ରକୁ ଅନୁରୋଧ କରାଯାଇଛି । ଫଳରେ, ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କୀୟ ସୂଚନା, ବିଭିନ୍ନ ଉପକାର ପାଇବାର ପଦ୍ଧତି, ନିଷ୍କାସନମାନ (Clearances), ଅନୁମତି, ଅନୁଜ୍ଞାପତ୍ର (Licence) ଇତ୍ୟାଦି GISTNICରେ ଅନ୍ତର୍ଭୁକ୍ତ କରାଯିବ । ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର ଦ୍ୱାରା ସଂଗୃହୀତ ସମସ୍ତ ସୂଚନାକୁ ଉପଭୋକ୍ତାମାନଙ୍କୁ ମିଳିପାରିବ ବୋଲି ପ୍ରସ୍ତାବ ଦିଆ ଯାଇଛି । ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର ମଧ୍ୟ ଏଥିରେ ସହମତ ପ୍ରକାଶ କରିଛି ।

ଉକ୍ତ ଅଭିଲେଖଗୁଡ଼ିକୁ ନେଇ ଉପଭୋକ୍ତା ସୂଚନା କେନ୍ଦ୍ରମାନ ପ୍ରତିଷ୍ଠା କରିବାକୁ ସୁଖ୍ୟାତି ଥିବା ଉପଭୋକ୍ତା ସଂସ୍ଥାମାନଙ୍କୁ ଖାଉଟି ମଙ୍ଗଳ ପାଣ୍ଠି (Consumer Welfare Fund) ରୁ ଆର୍ଥିକ ସାହାଯ୍ୟ ଦେବା ପାଇଁ ପ୍ରସ୍ତାବ ଦିଆଯାଇଛି । ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର ତରଫରୁ ମିଳୁଥିବା କଂପ୍ୟୁଟର ପ୍ରଦତ୍ତ ସୂଚନା ଯୋଗାଇବା ବ୍ୟତୀତ, ଏହି କେନ୍ଦ୍ରଗୁଡ଼ିକ ଗ୍ରନ୍ଥାଗାର ହିସାବରେ କାର୍ଯ୍ୟ କରିବେ ଓ ଉପଭୋକ୍ତା ସମ୍ବନ୍ଧୀୟ ଦରକାରୀ ବହି, କ୍ଷୁଦ୍ର ପୁସ୍ତିକା, ପତ୍ର ପତ୍ରିକା, ଦୃଶ୍ୟ ଚଳଚ୍ଚିତ୍ର (Video Films) ଇତ୍ୟାଦି ସାଇତି ରଖିବେ । ଏହି ଉଦ୍ଦେଶ୍ୟରେ ଆର୍ଥିକ ସାହାଯ୍ୟ ବର୍ଦ୍ଧିତ କରାଯିବ । କେତେକ ଦରକାରୀ ଆସବାବପତ୍ର ଯଥା ବହିଥାକ, ଆଲମିରା, ଚେୟାର ଇତ୍ୟାଦି ମଧ୍ୟ ଯୋଗାଇ ଦିଆଯିବ ।

ଏହି ସୂଚନା କେନ୍ଦ୍ର ନିଜ ପାଖରେ ରଖିଥିବା ଖାଉଟି ସୁରକ୍ଷା ସମ୍ବନ୍ଧୀୟ ବହି, ଛବି, କ୍ଷୁଦ୍ର ପୁସ୍ତିକା, ଭିଡ଼ିଓ ଚଳଚ୍ଚିତ୍ର ଇତ୍ୟାଦି ଆଡ଼କୁ ଅନ୍ୟ ଉପଭୋକ୍ତା ସଂସ୍ଥା ମାନଙ୍କର ଦୃଷ୍ଟି ଆକର୍ଷଣ କରି ଓ ଉପଭୋକ୍ତା ସଚେତନ ଶିବିର (Consumer awareness camps) ମାନଙ୍କରେ ଏହାକୁ ବ୍ୟବହାର ପାଇଁ ସମ୍ବଳ କେନ୍ଦ୍ର (Resource Centre) ରୂପେ କାର୍ଯ୍ୟ କରିବ । ସରକାର କିମ୍ବା ଉପଭୋକ୍ତା ମଙ୍ଗଳ ପାଣ୍ଠିଠାରୁ ସାହାଯ୍ୟ ପ୍ରାପ୍ତ ଉପଭୋକ୍ତା ସଂସ୍ଥା ଦ୍ୱାରା ପ୍ରକାଶିତ ସମସ୍ତ ପୁସ୍ତକ, କ୍ଷୁଦ୍ର ପୁସ୍ତିକା, ଚଳଚ୍ଚିତ୍ର,. ବହୁଛବି ଇତ୍ୟାଦି ଏହି ସୂଚନା କେନ୍ଦ୍ରମାନଙ୍କୁ ଯୋଗାଇ ଦିଆଯିବ । ଏହିପରି, କିଛିଦିନ ପରେ ଏହି ସୂଚନା କେନ୍ଦ୍ରଗୁଡ଼ିକ ଉପଭୋକ୍ତ ସମ୍ବଳରେ ଭରପୁର ହୋଇ ନିଜ ଅଞ୍ଚଳରେ ଥିବା ଉପଭୋକ୍ତା ସଂସ୍ଥାମାନଙ୍କୁ ସାହାଯ୍ୟ କରିବେ ।

ଏହି ସୂଚନା କେନ୍ଦ୍ରଗୁଡ଼ିକ ମଧ୍ୟ ନିଜ ନିଜ ଅଞ୍ଚଳରେ ପଥ ପ୍ରଦର୍ଶକ କେନ୍ଦ୍ର (Guidance Centre) ରୂପେ କାର୍ଯ୍ୟ କରିବେ ସେଇଁଠାରେ ଉପଭୋକ୍ତାମାନଙ୍କୁ ଉପଭୋକ୍ତା ସୁରକ୍ଷା ସମ୍ବନ୍ଧୀୟ ସମସ୍ତ ଦିଗ ବିଷୟରେ ବାଟ ଦେଖାଇ ଦିଆଯିବ । ଉପଭୋକ୍ତା ଅନୁଷ୍ଠାନ କିମ୍ବା ସ୍ଥାନୀୟ ମଙ୍ଗଳ ସହଯୋଗ (Local Welfare Association) ମାନଙ୍କରୁ ସ୍ୱେଚ୍ଛାସେବୀମାନେ ନିଜର ସୁଚିନ୍ତିତ ମାର୍ଗ ଏହି ସୂଚନା କେନ୍ଦ୍ର କରିଆରେ ପ୍ରଦର୍ଶନ କରି ପାରିବେ । ସରକାରୀ ଚାକିରିରୁ ଅବସର ପାଇଥିବା ଅନେକ ଜ୍ଞାନୀ ଓ ପ୍ରୋତ୍ସାହନକାରୀ ବ୍ୟକ୍ତି ଅଛନ୍ତି, ଯେଉଁ ମାନଙ୍କର ଜନସେବା କରିବାକୁ ପ୍ରବଳ ଆଗ୍ରହ ଅଛି, ସେମାନଙ୍କର ସେବାକୁ ମଧ୍ୟ ଏହି କେନ୍ଦ୍ର ସାମୟିକ ଭାବେ ଉପଯୋଗ କରିପାରିବ । ବସ୍ତୁତଃ, ଏହି କେନ୍ଦ୍ରମାନ ସ୍ୱାସ୍ଥ୍ୟ ପରୀକ୍ଷା କେନ୍ଦ୍ର (Health Clinic) ପରି କାମ କରିବେ, ଯେଉଁଠାକୁ ବିଶାରଦମାନେ ସପ୍ତାହର ଏକ ନିର୍ଦ୍ଦିଷ୍ଟ ଦିନରେ ଆସି ଏକ ନିର୍ଦ୍ଦିଷ୍ଟ ବିଷୟରେ ପରାମର୍ଶ ଦେବେ । ସେହିପରି ଆଇନ, ପ୍ରଶାସନ ଏବଂ କର ବିଷୟରେ ବିଶାରଦମାନେ ଏକ ନିର୍ଦ୍ଦିଷ୍ଟ ସମୟ ଓ ଦିବସରେ ଉକ୍ତ କେନ୍ଦ୍ରକୁ ଆସି ସେମାନଙ୍କର ମୂଲ୍ୟବାନ ପରାମର୍ଶ ଦେବେ ।

ପରୀକ୍ଷା କେନ୍ଦ୍ରମାନ ଯେପରି ଖାଦ୍ୟରେ ସାଧାରଣ ଅପମିଶ୍ରଣ ପରୀକ୍ଷା କରନ୍ତି, ସେହିପରି ଏହି ସୂଚନା କେନ୍ଦ୍ରମାନ କାର୍ଯ୍ୟ କରିବେ । ଏହି ପରୀକ୍ଷା କେନ୍ଦ୍ରମାନଙ୍କୁ ପ୍ରତିଷ୍ଠା କରିବା ଓ ଚଳାଇବା ପାଇଁ ଯେଉଁ ମୂଳଧନ ଏବଂ ରାଜସ୍ୱ ଖର୍ଚ୍ଚ ହେବ ତାହା ଅତି ଅଳ୍ପ ଅଟେ । ଉପଭୋକ୍ତା-ମାନଙ୍କୁ ଖାଦ୍ୟ ଅପମିଶ୍ରଣ ସଂପର୍କରେ ସଚେତନ କରାଇବା ଏହି କେନ୍ଦ୍ରମାନଙ୍କର କାର୍ଯ୍ୟ ହେବ । ଏ କ୍ଷେତ୍ରରେ ଯେତେ ଖର୍ଚ୍ଚ ହେବ ଆର୍ଥିକ ସାହାଯ୍ୟ ତାହାକୁ ଭରଣା କରିବ ।

ଏହିପରି ଭାବେ ଉପଭୋକ୍ତା ସୂଚନା କେନ୍ଦ୍ର ଗ୍ରନ୍ଥାଗାର, ସମ୍ବଳକେନ୍ଦ୍ର (Resource Centre), ମାର୍ଗ ପ୍ରଦର୍ଶନ କେନ୍ଦ୍ର (Guidance Centre) ଓ ପରୀକ୍ଷା କେନ୍ଦ୍ର ରୂପେ କାର୍ଯ୍ୟକରି ଉପଭୋକ୍ତାମାନଙ୍କୁ ଏ ସମସ୍ତ ସାହାଯ୍ୟ ସୁବିଧା ଯୋଗାଇଦେବ ।

ପ୍ରାଥମିକ ସ୍ତରରେ ଏପରି କେନ୍ଦ୍ର ଚଳାଇବା ପାଇଁ ସ୍ୱଳ୍ପ ମୂଳଧନ ବାବଦକୁ ଆର୍ଥିକ ସାହାଯ୍ୟ ସୁପରିଚାଳିତ ସଂସ୍ଥା (Well run Orgn.)କୁ ଯୋଗାଇ ଦିଆଯିବ । ପ୍ରଥମ ୩ ବର୍ଷରୁ ୫ ବର୍ଷ ପର୍ଯ୍ୟନ୍ତ କେନ୍ଦ୍ର ପରିଚାଳନା ଖର୍ଚ୍ଚକୁ କ୍ରମାଗତ ଭାବେ ବହନ କରାଯିବ । ଏପରି କେନ୍ଦ୍ରକୁ ସ୍ଥାପନା କରିବାକୁ ସଂସ୍ଥା ସ୍ଥାନ ନିରୂପଣ କରିବ । ଭଡ଼ା ପାଇଁ ଉପଭୋକ୍ତା ମଙ୍ଗଳ ପାଣ୍ଠି (CWF)ରୁ କୌଣସି ଟଙ୍କା ଦିଆଯିବ ନାହିଁ । ଅନ୍ୟ ଖ୍ୟାତି ସଂପନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ କିମ୍ବା ନାଗରିକ ଦଳ (Citizen Group)କୁ ଏପରି କେନ୍ଦ୍ର ଚଳାଇବାକୁ ସାହାଯ୍ୟ ମଧ୍ୟ ଦିଆଯିବ । ରୋଟାରୀ କ୍ଲବ ଇତ୍ୟାଦି ପରି ଅନ୍ୟ ସଂସ୍ଥା ଯେଉଁମାନେ କେନ୍ଦ୍ର ଚଳାଇବାକୁ ଆଗ୍ରହୀ ହେବେ, ସେମାନଙ୍କୁ ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର ସହିତ ସଂପର୍କ ରଖିବା ପାଇଁ ଆନୁଷଙ୍ଗିକ ସୁବିଧା ଯୋଗାଇ ଦିଆଯାଇ ପାରିବ । ଉପଭୋକ୍ତ ଖର୍ଚ୍ଚ ବ୍ୟତୀତ, ଅନ୍ୟାନ୍ୟ ଖର୍ଚ୍ଚକୁ ସଂପୃକ୍ତ କ୍ଲବ କିମ୍ବା ଅନୁଷ୍ଠାନ ବହନ କରିବେ । ୧୯୯୭-୯୮ ଆର୍ଥିକ ବର୍ଷରେ ଏହା ମଧ୍ୟ ପ୍ରସ୍ତାବ ଦିଆଯାଇଛି ଯେ ପ୍ରତ୍ୟେକ ଜିଲ୍ଲାକୁ ଅନ୍ୟୂନ ଗୋଟିଏ ସୂଚନା କେନ୍ଦ୍ର ଯୋଗାଇ ଦିଆଯିବ । ବଡ଼ ବଡ଼ ସହରମାନଙ୍କରେ ଯେଉଁଠି ଅନେକ ସଂସ୍ଥା ଏପରି କେନ୍ଦ୍ର ପରିଚାଳନା କରିବାକୁ ଆଗେଇ ଆସିବେ, ସେଠାରେ ଏକରୁ ଅଧିକ ସୂଚନା କେନ୍ଦ୍ର ପ୍ରତିଷ୍ଠା ହୋଇ ପାରିବ ।

ଆଶା କରାଯାଏ, ଏପରି ଉପଭୋକ୍ତା ସୂଚନା କେନ୍ଦ୍ର ନିକଟ ଭବିଷ୍ୟତରେ ଦେଶର ପ୍ରତ୍ୟେକ ଜିଲ୍ଲାରେ ପ୍ରତିଷ୍ଠା ହେଉ, ଲୋକେ ଦେଶ ବିଦେଶର ଖବର, କାରିଗରୀ ଜ୍ଞାନ କୌଶଳ ଓ ସର୍ବୋପରି ଉପଭୋକ୍ତା ସୂଚନାରେ ଅବଗତ ହୋଇ ସେମାନଙ୍କର ଜୀବନ ଧାରଣ ମାର୍ଗକୁ ଉନ୍ନତ କରାନ୍ତୁ ।


1. R. Satyanarayan; Information Technology & its facets. P. 15
2. IGNOU; MLIS-01 Information communication and Society Block - 1. P.8
3. Editor, Upabhokta jagaran; - "Consumer Information centres" (June, 97) p.18.
4. Editor, Upabhokta Jagaran; Ibid . P.18



ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର
ଭୁବନେଶ୍ୱର



ସୂଚନା ଭବନଠାରେ ଆୟୋଜିତ ରାଜ୍ୟସ୍ତରୀୟ ଚାଖିଖୁଣ୍ଟିଆ (ଚନ୍ଦନ ହଜୁରୀ) ଜୟନ୍ତୀ ପାଳନ ଅବସରରେ ଶ୍ରୀ ବିଶ୍ୱରାଜ ପଟେଲ ତାଙ୍କ ଫଟୋ ଚିତ୍ରରେ ପୁଷ୍ପମାଲ୍ୟ ଅର୍ପଣ କରୁଛନ୍ତି । ଲୋକ ସଂପର୍କ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର ଓ ଡଃ. କରୁଣାସାଗର ବେହେରା ଉପସ୍ଥିତ ଅଛନ୍ତି



ଧଉଳି ଶାନ୍ତିସ୍ତୂପଠାରେ ଆୟୋଜିତ ରାଜ୍ୟ ସ୍ତରୀୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜୟନ୍ତୀ ସମାରୋହରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ




ସୂଚନା ଓ ଲୋକ ସମ୍ପର୍କ ବିଭାଗ ଓ ପଶ୍ଚିମ ଓଡ଼ିଶା ଅଗ୍ରଣୀ ସଂଗଠନ ତରଫରୁ ରାଜ୍ୟ
ସୂଚନାଭବନଠାରେ ଆୟୋଜିତ ବୀର ସୁରେନ୍ଦ୍ର ସାଏଙ୍କ ଜୟନ୍ତୀ ସମାରୋହ




ସୂଚନାଭବନଠାରେ ଆୟୋଜିତ ବକ୍ସିଜଗବନ୍ଧୁ ବିଦ୍ୟାଧରଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବରେ
ରାଜ୍ୟ ପରିଷଦ ସଦସ୍ୟ ଶ୍ରୀ ସହଦେବ ସାହୁ, ଶ୍ରମନିୟୋଜନ ବିଭାଗ ଶାସନ ସଚିବ ଶ୍ରୀ ଅଜିତ
କୁମାର ତ୍ରିପାଠୀ, ଲୋକ ସଂପର୍କ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର, ଓଡ଼ିଶା ରିଭ୍ୟୁ
ସଂପାଦକ ଶ୍ରୀ ରାଜକିଶୋର ମିଶ୍ର ଓ ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଲକ୍ଷ୍ମୀନାରାୟଣ ରାୟ ସିଂହ
ମଞ୍ଚାସୀନ ଅଛନ୍ତି



ଭୁବନେଶ୍ୱର ୟୁନିଟ୍-୧ ପଡ଼ିଆଠାରେ ଆୟୋଜିତ ଜାତୀୟ ପତାକା ଅବତରଣ
ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



ଭୁବନେଶ୍ୱର ମହାନଗର ନିଗମ ଦ୍ୱାରା ଆୟୋଜିତ ପରିମଳ ସପ୍ତାହକୁ ମୁଖ୍ୟ ଶାସନ ସଚିବ
ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଶୁଭାରମ୍ଭ କରୁଛନ୍ତି



ସୂଚନାଭବନଠାରେ ଆୟୋଜିତ ସୁଭାଷ ଚନ୍ଦ୍ର ବୋଷ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବ ଓ ଜନ୍ମ ଶତବାର୍ଷିକୀ ପାଳନର ଉଦ୍‌ଯାପନୀ ଉତ୍ସବ ଅବସରରେ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଶ୍ରୀ ଶୈଳେନ୍ଦ୍ର ନାଥ ଫୁକନ ନେତାଜୀଙ୍କ ଫଟୋଚିତ୍ରରେ ପୁଷ୍ପମାଲ୍ୟ ଅର୍ପଣ କରୁଛନ୍ତି । ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ଲୋକସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର ଉପସ୍ଥିତ ଅଛନ୍ତି



ରାଜ୍ୟ ସଚିବାଳୟଠାରେ ଆୟୋଜିତ କୁଷ୍ଠରୋଗ ନିରାକରଣ ଅଭିଯାନ ଆଲୋଚନାଚକ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ଜଗନ୍ନାଥ ରାଉତ ଭାଷଣ ଦେଉଛନ୍ତି



ଓଡ଼ିଶା କାଜୁ ଉନ୍ନୟନ ନିଗମର ଅଧ୍ୟକ୍ଷ ଶ୍ରୀ ହରିହର ସାହୁ ନିଗମର ଦୁଇବର୍ଷର ଲାଭାଂଶ ବାବଦରେ ୫ ଲକ୍ଷ ନଅ ହଜାର ଟଙ୍କାର ଏକ ଚେକ୍ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ତାଙ୍କ ସରକାରୀ ବାସଭବନରେ ପ୍ରଦାନ କରୁଛନ୍ତି



ରାଜଧାନୀ ମୁଖ୍ୟ ଚିକିତ୍ସାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ରୋଟାରୀ କ୍ଲବ ଭୁବନେଶ୍ୱର ଦ୍ୱାରା ପ୍ରଦତ୍ତ ଏକ ଅତ୍ୟାଧୁନିକ ଚକ୍ଷୁ ଅସ୍ତ୍ରୋପଚାର ଯନ୍ତ୍ର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛନ୍ତି



ତୈଳ ସଂରକ୍ଷଣ ସପ୍ତାହ ଉପଲକ୍ଷେ ଭୁବନେଶ୍ୱର ପି.ଏମ୍.ଜି. ଛକଠାରେ ଆୟୋଜିତ ଗଣ ଦୌଡ଼କୁ ଉପମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ ପତାକା ଦେଖାଇ ଆନୁଷ୍ଠାନିକଭାବେ ଶୁଭାରମ୍ଭ କରୁଛନ୍ତି



ପି.ଏମ୍.ଜି. ଛକଠାରେ ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ପରିଷଦ ଆନୁକୂଲ୍ୟରେ ଆୟୋଜିତ ଭାରତ ସ୍ୱାଧୀନତାର ପଞ୍ଚାଶତମ ଜୟନ୍ତୀ ପାଳନ ଅବସରରେ ଅକ୍ଷୟ ଶକ୍ତି ଦୌଡ଼ ପ୍ରତିଯୋଗିତାକୁ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପି. କେ. ମିଶ୍ର ପତାକା ହଲାଇ ଉଦ୍‌ଘାଟନ କରୁଛନ୍ତି



ରାଜଭବନଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ମାନ୍ୟବର ରାଜ୍ୟପାଳ
ଶ୍ରୀ କେ.ଭି. ରଘନାଥ ରେଡ୍ଡୀଙ୍କ ସୌଜନ୍ୟମଳକ ସାକ୍ଷାତ କରଛନ୍ତି




ରୋଟାରୀ ଇଣ୍ଟର ନ୍ୟାସନାଲନିର୍ଦ୍ଦେଶକଙ୍କ ସହଧର୍ମିଣୀ ''ଯୋ ଆନ୍ ଥମସନ୍'' ଭୁବନେଶ୍ୱର
ଗଙ୍ଗନଗର ପଲ୍ସ ପୋଲିଓ କେନ୍ଦ୍ରରେ ପ୍ରଥମ ପିଲାକୁ ଟିକା ଖୁଆଇ ଦ୍ୱିତୀୟ ପର୍ଯ୍ୟାୟ ପଲ୍ସ
ପୋଲିଓ କାର୍ଯ୍ୟକ୍ରମର ଶୁଭାରମ୍ଭ କରୁଛନ୍ତି । ନିର୍ଦ୍ଦେଶକ ''ବାରି ଥମସନ୍'' ଓ ସଂସ୍କୃତି ସଚିବ
ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ ଉପସ୍ଥିତ ଅଛନ୍ତି



ରାଜଭବନଠାରେ ଭାରତର ନିର୍ବାଚନ କମିଶନର ଶ୍ରୀ ଜି.ଭି.ଜି କୃଷ୍ଣମୂର୍ତ୍ତି ମୁଖ୍ୟ ଶାସନ ସଚିବ
ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ବରିଷ୍ଠ ପଦାଧିକାରୀଙ୍କ ସହ ରାଜ୍ୟରେ ନିର୍ବାଚନ ପରିଚାଳନା
ସଂପର୍କରେ ଆଲୋଚନା କରୁଛନ୍ତି



ରାଜ୍ୟ ନିର୍ବାଚନ ଅଧିକାରୀଙ୍କ କାର୍ଯ୍ୟାଳୟଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ
ଭାରତର ନିର୍ବାଚନ କମିଶନର ଶ୍ରୀ ଜି.ଭି.ଜି କୃଷ୍ଣମୂର୍ତ୍ତି ଭାଷଣ ଦେଉଛନ୍ତି

# ଦୁର୍ଦ୍ଦମନୀୟ ମୁକ୍ତିଯୋଦ୍ଧା ସୁରେନ୍ଦ୍ରନାଥ ଦ୍ୱିବେଦୀ

ଡ଼କ୍ଟର ନିଶାମଣି କର

Of Freedom and Life
he only is deserving
who everyday must take it anew

(Gothe)

ସୁଦକ୍ଷ ସଂଗଠକ, ଏକନିଷ୍ଠ ସଂଗ୍ରାମୀ ଓ ସମର୍ପିତ ସମାଜବାଦୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏକ ବହୁମୁଖୀ ବ୍ୟକ୍ତିତ୍ୱ । ଅନୁଢ଼ା ନିଷ୍ଠା, ଅଦମ୍ୟ ଚେଷ୍ଟା ଓ ଅସୀମ ସାହସର ସେ ଏକ ମୂର୍ତ୍ତିମନ୍ତ ପ୍ରତୀକ । ସୁଦୀର୍ଘ ସାତ ଦଶନ୍ଧିର ଓଡ଼ିଶାର ସଦ୍ୟ ଅତୀତ ହେଉଛି ତାଙ୍କ କର୍ମନିଷ୍ଠ, ଐକାନ୍ତିକ ପ୍ରଚେଷ୍ଟାର ଚାରଣ ଭୂମି । ବହୁ ତିକ୍ତ ମଧୁର ଅନୁଭୂତିକୁ ଆପଣେଇ ନେଇ ସଂଗ୍ରାମୀ ଜୀବନର ବହୁ ସଂକେତ ଶିଳା ପାରି ହୋଇ, ସେ ଆଜି ପରିଣତ ବୟସରେ । ଏକ ନିଷ୍ଠାନଙ୍କ ବ୍ୟକ୍ତିତ୍ୱ ଓ ନିଷ୍ଠାପର ସଂଗ୍ରାମୀ ଭାବେ ଗତକାଲିର ପ୍ରବୀଣ ରାଜନୈତିକ ଓ ଧୂରୀଣ ବ୍ୟବସ୍ଥାପକ ଶ୍ରୀ ଦ୍ୱିବେଦୀ ଆଜିର ନବୀନମାନଙ୍କ ପାଇଁ ସତତ ଉଦ୍ଭାସିତ ଏକ ଆଲୋକ ବର୍ତ୍ତିକା - ପ୍ରେରଣାର ଏକ କ୍ରିୟାଶୀଳ ଉତ୍ସ । ଏକ ବନ୍ଧନ ହୀନ, ଶୋଷଣ-ରହିତ୍ ସମାଜ ବ୍ୟବସ୍ଥାର ସ୍ୱପ୍ନରେ ସଦା ବିଭୋର ତାଙ୍କର ବ୍ୟକ୍ତିସତ୍ତା ଆତ୍ମତ୍ୟାଗ, ସଂଯମ ଓ ଶୃଙ୍ଖଳାର ଅନୁଶାସନରେ ଚିର ଅଭିମନ୍ତ୍ରିତ :

''ଦାରିଦ୍ର୍ୟ ଓ ଶୋଷଣ ନାଶ କରିବା ନିମନ୍ତେ କାର୍ଯ୍ୟ କରିବା ମୋର ଏକ ସ୍ୱାଭାବିକ କ୍ରିୟା । ଏ ଚେତନା ସ୍ୱତଃ ପ୍ରଣୋଦିତ...''

ଫେବୃଆରୀ ତା ୧୧ ରିଖ, ୧୯୧୩ ମସିହାର ସେହି ମାହେନ୍ଦ୍ର ବେଳାରେ ପିତା ମାଗୁଣୀ ଦ୍ୱିବେଦୀ ଓ ମାତା ଲକ୍ଷ୍ମୀ ଦେବୀଙ୍କ ଔରସରେ କଟକ ଜିଲ୍ଲାସ୍ଥ ଖଣ୍ଡସାହି ଗ୍ରାମରେ ଭୂମିଷ୍ଠ ହୋଇଥିଲେ ସିଏ । କିଏ ଜାଣିଥିଲା ସେଦିନ ଯେ, ନିମ୍ନ ମଧ୍ୟବିତ୍ତ ପରିବାରର ସୀମିତ ସଚେତନ ପରିଧିରେ ଆବିର୍ଭୂତ ହେବ ଦୀପଶିଖାଟିଏ ବୋଲି - କିଏ ଭାବିଥିଲା ସେଦିନ ଯେ, କେଉଁ ଅଜଣା ଏକ ଦୂରନ୍ତର ଆକର୍ଷଣରେ ମହିମାନ୍ୱିତ ସେଇ ଶିଶୁଟିର ହୃଦୟ ପରିଣତ ବୟସରେ ସ୍ପନ୍ଦିତ ହେବ ଅଗଣିତ ଅବହେଳିତ ମଣିଷଙ୍କ ପାଇଁ । ଶଶିକଳା ପରି ବଢ଼ିଚାଲିଥିଲା ଶିଶୁଟି, ମାତାଙ୍କର ଗଭୀର ଧର୍ମ ବିଶ୍ୱାସ ଓ ସତ୍ୟନିଷ୍ଠ ଅଭିଭୂତ କରିଥିଲା ତାଙ୍କୁ । ସେଦିନ ସ୍କୁଲରେ ଦୋକାନୀକୁ ଏକ ଅଚଳ ପଇସା ଦେଇ ମୁଡ଼ି ଖାଇଥିବାର ସୂଚନା ପାଇ ମା ଲକ୍ଷ୍ମୀ ଦେବୀ କ୍ରୋଧାନ୍ୱିତା ହୋଇ ଏକ ବ୍ରହ୍ମଚାପୁଡ଼ା ଦେଲେ ଏବଂ ପ୍ରଶ୍ନ କରିଥିଲେ : '' ଗୁଡ଼ିଆକୁ ଠକିଲୁ ? ଠକିଲୁ ?? ଦିନେ ମୁଡ଼ି ନଖାଇ କ'ଣ ମରି ଯାଉଥିଲୁ ???'' ମା''ଙ୍କର ଅନୁଶାସନ (ବ୍ରହ୍ମଚାପୁଡ଼ା) ଗଭୀର ରେଖାପାତ କରିଥିଲା ସୁରେନ୍ଦ୍ରଙ୍କ କିଶୋର ମନରେ ଏବଂ ସେଇ ମୁହୂର୍ତ୍ତରେ ପ୍ରସ୍ତୁତ ହୋଇଗଲା ଏକ ସତ୍ୟନିଷ୍ଠ ଜୀବନର ଖସଡ଼ା - ଦଶଟି ଆଗ୍ନେୟ ଶପଥ କରିଥିଲେ ସିଏ, ଯାହା ତାଙ୍କୁ ଜୀବନରେ ବହୁ ସାର୍ଥକତା ଆଣିଦେଲା । ବହୁବାର ଉପରୋକ୍ତ ଘଟଣାଟିର ଅବତାରଣା କରି ସେ କହନ୍ତି :

''ସାଧୁତାର ପଥ, ଧର୍ମର ପଥ, ପୁଣ୍ୟର ପଥ
ଈଶ୍ୱରଙ୍କ ସହ ମିଶିବାର ପଥ ।''

୧୯୩୦ ମସିହାରେ ଭାରତୀୟ ସାମାଜିକ ବାତାବରଣ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୋଧୀ ଚେତନାରେ ଉଷ୍ମ ହୋଇ ଉଠିଥାଏ । ନିକଟ ଅତୀତରେ ସମାପ୍ତ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ (ଜାନୁଆରୀ ୨୬, ୧୯୨୯) 'ପୂର୍ଣ୍ଣ ସ୍ୱରାଜ୍ୟର' ଡ଼ାକରା ଦିଆ ଯାଇଥାଏ । ବ୍ରିଟିଶ ସରକାରଙ୍କର ଲବଣ ଆଇନ ବିରୁଦ୍ଧରେ ଭାରତର କୋଣ, ଅନୁକୋଣରେ ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହର ଧ୍ୱନି ପ୍ରତିଧ୍ୱନିତ ହେଉଥାଏ । ସେଇ ବିପ୍ଳବର ଜାଜଲ୍ୟ ପ୍ରେରଣା ଅନୁରଣିତ ହୁଏ ରେଭେନ୍‌ସା କଲେଜିଏଟ୍ ସ୍କୁଲର ଦଶମ ଶ୍ରେଣୀର ଛାତ୍ର ସୁରେନ୍ଦ୍ରଙ୍କ ମାନସ ପଟରେ । ମାତ୍ର ୧୭ ବର୍ଷ ବୟସରେ ନିଜ ପାଠରେ ଡ଼ୋରି ବାନ୍ଧି ଶିକ୍ଷାର୍ଥୀ ସୁରେନ୍ଦ୍ରନାଥ ଝାସ ଦିଅନ୍ତି ସ୍ୱାଧୀନତା ସଂଗ୍ରାମରେ ଏବଂ କ୍ରମେ ପାଲଟି ଯାଆନ୍ତି ସତ୍ୟାଗ୍ରହର ସତ୍ୟାଶ୍ରୟୀ ଶିକ୍ଷା ନବିଶ । ଠିକ୍ ପରେ ପରେ ଆରମ୍ଭ ହୁଏ ବିଦେଶୀ ଶାସକର କୋପଦୃଷ୍ଟି - କାରାବରଣ କରନ୍ତି ପ୍ରାୟ ୧ ବର୍ଷ ପାଇଁ ଯାହାର ପୁନରାବୃତ୍ତି ହୁଏ ଆଉଥରେ ୧୯୩୨ ରେ । ପୁଲିସ୍‌ର ଲାଠି ଓ କୋରଡ଼ା, ଗୋରା ଶାସକର ଜୁଲୁମ୍ ଓ କାରାଗାରର ଅନ୍ଧଗଳି ଭୀତତ୍ରସ୍ତ କରିପାରେନା ତାଙ୍କୁ । ଏକ ମହୀୟାନ ଆଦର୍ଶରେ ଅନୁପ୍ରାଣିତ ହୋଇ ଯାବତୀୟ ଦୁଃସ୍ଥିତିକୁ ସାମ୍ନା କରିବାର ଆତ୍ମବିଶ୍ୱାସ ଦେଦିପ୍ୟମାନ ତାଙ୍କ ବ୍ୟକ୍ତିତ୍ୱରେ ।

ଏଇ ସନ୍ଧିକ୍ଷଣରେ (୧୯୩୩ ମସିହା) 'କଂଗ୍ରେସ ସୋସିଆଲିଷ୍ଟ ପାର୍ଟି' ନାମରେ କଂଗ୍ରେସ ଭିତରେ ଏକ ଉପଦଳ ଗଠନରେ ବ୍ରତୀ ହୋଇଥାନ୍ତି ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଡ଼ଃ ରାମ ମନୋହର ଲୋହିଆ, ଜୟ ପ୍ରକାଶ ନାରାୟଣ, ଅଶୋକ ମେହେଟ୍ଟା ।

ବ୍ରିଟିଶ ସାମ୍ରାଜ୍ୟବାଦର ବିଲୋପ କରି ଏକ ଶ୍ରେଣୀହୀନ, ଶୋଷଣହୀନ ସମାଜ ଗଠନରେ ବ୍ରତୀ ହୋଇ ଥାଆନ୍ତି ସେମାନେ । ଓଡ଼ିଶାରେ ଅନୁରୂପ ଚେତନାର ସଫଳ ରୂପାୟନ କରୁଥାଆନ୍ତି ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ଏବଂ ସେମାନଙ୍କ ସହ ବିନା ସଙ୍କୋଚରେ ଯୋଗ ଦିଅନ୍ତି ଯୁବକ ସୁରେନ୍ଦ୍ର ନାଥ । କ୍ରମେ ତାଙ୍କ କାର୍ଯ୍ୟ ପରିସର ବ୍ୟାପକ ହୁଏ - ରେଳ ରୋକ, ପିକେଟିଂ ଓ ଆଇନ ଅମାନ୍ୟ ଆଦି ବିଭିନ୍ନ ପନ୍ଥା ଆଦରି ନିଅନ୍ତି ସିଏ । ବ୍ୟକ୍ତିଗତ ସତ୍ୟାଗ୍ରହୀ ହିସାବରେ ୧୬ ମାସ ପାଇଁ ଜେଲ୍ ଦଣ୍ଡରେ ଦଣ୍ଡିତ ହୁଅନ୍ତି ସିଏ ।

୧୯୪୨ ମସିହାର ଅଗଷ୍ଟ ବିପ୍ଳବ ସାରା ଭାରତରେ ଏକ ଶିହରଣ ଖେଳେଇ ଦେଉଥାଏ । ବାପୁଙ୍କର 'କର ବା ମର' (Do or Die) ଡାକରାରେ ଉଦ୍‌ବୁଦ୍ଧ ହୋଇ ସତ୍ୟାଗ୍ରହୀମାନେ ଏକ ସମର୍ପିତ ଭାବୋଲ୍ଲାସର କବଳିତ ହୋଇଥାଆନ୍ତି । କୁଚକ୍ରୀ ଗୋରା ଶାସକ ଏହି ଉଚ୍ଛ୍ୱସିତ, ଜାଗ୍ରତ ଭାବକୁ ଦମନ କରିବା ପାଇଁ କଂଗ୍ରେସର ସମସ୍ତ ପ୍ରତିଷ୍ଠିତ ନେତାମାନଙ୍କୁ ଗିରଫ କରିଥାଆନ୍ତି । ସୁତରାଂ ନେତୃତ୍ୱ ଆସିଥାଏ ଯୁବ ପ୍ରତିଭାଧରମାନଙ୍କ ହାତକୁ । ସେଇ ସନ୍ଧିକ୍ଷଣରେ ଜେଲ୍‌ରୁ ମୁକ୍ତ ହୋଇ ସୁରେନ୍ଦ୍ର ନାଥ ଫେରି ଆସନ୍ତି କଟକକୁ ଏବଂ କଟକର ଅଲିଶା ବଜାରରେ ଏକ ଗୁପ୍ତ ସଂଗଠନ ଖୋଲି ଅଗଷ୍ଟ ଆନ୍ଦୋଳନର ନେତୃତ୍ୱ ନିଅନ୍ତି । ବାଲେଶ୍ୱରର ଇରମ୍, ଲକ୍ଷ୍ମୀପୋଖରୀଠାରୁ ଆରମ୍ଭ କରି କୋରାପୁଟର ଗୁଣୁପୁର, ମାଟିଲି ଏବଂ କଟକର ବଡ଼ି, ଜାଗପତ୍ରା, କୃଷ୍ଣନଗର ଓ ଏରସମା ଅଞ୍ଚଳରେ ବ୍ୟାପିଯାଏ ବିପ୍ଳବର ବହ୍ନି । ଗୁପ୍ତ ବୁଲେଟିନ୍ ଓ ନିର୍ଦ୍ଦେଶନାମା ଦ୍ୱାରା ନିୟନ୍ତ୍ରିତ ହେଉଥାଏ ଆନ୍ଦୋଳନ ।

ଭାତୃତ୍ୱସ୍ତ ବ୍ରିଟିଶ ଶାସକ କ୍ଷିପ୍ର ଗତିରେ ବ୍ୟାପି ଯାଉଥିବା ଏଇ ବିପ୍ଳବାଗ୍ନିକୁ ଯଥାପରୋନାସ୍ତି ନିର୍ବାପିତ କରିବାରେ ବ୍ୟାପୃତ ହୁଅନ୍ତି । ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଖୁଣ୍ଟରେ ଝୁଲେଇ ଦିଆଯାଏ । ଅଲିଶା ବଜାରସ୍ଥ ଗୁପ୍ତ ସଂଗଠନର ଦପ୍ତର ଉପରେ ଚଢ଼ାଉ କରି ସୁରେନ୍ଦ୍ର ନାଥଙ୍କୁ ଗିରଫ କରାଯାଏ ଏବଂ ଦେଶ ଦ୍ରୋହ, ରାଜଦ୍ରୋହ, 'ହାଉଣ୍ଡ୍ରିଡିକ୍' ମାମଲାରେ ତାଙ୍କୁ ଅଭିଯୁକ୍ତ କରାଯାଇ ଦ୍ୱିବେଦୀ ଷଡ଼ଯନ୍ତ୍ର ମକଦ୍ଦମାର (Dwivey Conspiracy Case) ବିଚାର ଆରମ୍ଭ ହୁଏ ତାଙ୍କ ନାମରେ । ଅବଶ୍ୟ ପରେ ଆଇରିଶ୍ ଜଜ୍ ମାହେର୍ ସାହେବଙ୍କ ଅନୁଶୀଳନ ଭିତ୍ତିକ ଅନୁକମ୍ପା ହେତୁ ଫାଶୀଖୁଣ୍ଟର ଡାକରାରୁ ବର୍ତ୍ତି ଯାଆନ୍ତି ସିଏ ଏବଂ ଦୀର୍ଘ ୬ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହୁଅନ୍ତି ।

ଖାଲି ଅଗଷ୍ଟ ବିପ୍ଳବ ନୁହେଁ, ଓଡ଼ିଶାର ଗଡ଼ଜାତ ଆନ୍ଦୋଳନରେ ମଧ୍ୟ ସାରଙ୍ଗଧର ଦାସ, ଗୌରାଙ୍ଗ ଚରଣ ଦାସ ଓ ଅନନ୍ତ ପଟ୍ଟନାୟକଙ୍କ ସହ ମିଶି ସେ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି । ଢେଙ୍କାନାଳ ଓ ନୀଳଗିରିର ପ୍ରଜା ଆନ୍ଦୋଳନରେ ପରୋକ୍ଷ ଭାବେ ଓ ରଣପୁର ଆନ୍ଦୋଳନରେ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ଥିବାର ବହୁ ନଜିର ଅଛି । ଅନୁରୂପ ଭାବେ, ପରବର୍ତ୍ତୀ ସମୟରେ ଗଡ଼ଜାତ ମିଶ୍ରଣ ସପକ୍ଷରେ ସେ ଜନ ସଚେତନତା ସୃଷ୍ଟି କରୁଥିଲେ । ମୁଖ୍ୟତଃ କଳାହାଣ୍ଡି ଓ ମୟୂରଭଞ୍ଜ ଇତ୍ୟାଦିର ମିଶ୍ରଣ ତାଙ୍କ ଦ୍ୱାରା ସମ୍ଭବ ହୋଇଥିଲା ବୋଲି ବହୁ ଗବେଷକ/ ଐତିହାସିକ ମତ ଦିଅନ୍ତି ।

୧୯୪୭ରେ ଭାରତ ସ୍ୱାଧୀନ ହେବାପରେ ସେ କୌଣସି ପଦପଦବୀ ପାଇଁ ଲାଳାୟିତ ନହୋଇ ଗଠନମୂଳକ କାର୍ଯ୍ୟରେ ବ୍ରତୀ ହୋଇଥାଆନ୍ତି । ଆପଣାର ବିଚାର ଓ କାର୍ଯ୍ୟ ପ୍ରଣାଳୀକୁ ଭିତ୍ତି କରି ସର୍ବ ଭାରତୀୟ ସ୍ତରରେ କଂଗ୍ରେସ ସମାଜବାଦୀ ଗୋଷ୍ଠୀ ଅଲଗା ହୋଇଯାଏ ମୂଳ କଂଗ୍ରେସରୁ ଏବଂ ଓଡ଼ିଶା କଂଗ୍ରେସର ତତ୍‌କାଳୀନ ନେତା ଡକ୍ଟର ହରେକୃଷ୍ଣ ମହତାବ ସମାଜବାଦୀମାନଙ୍କୁ କଂଗ୍ରେସରୁ ବାହାରି ଯିବାକୁ ପରୋକ୍ଷ ନିର୍ଦ୍ଦେଶ ଦିଅନ୍ତି । ସମାଜବାଦର ସଚ୍ଚା ଚିନ୍ତାନାୟକ ସୁରେନ୍ଦ୍ର ନାଥ ୧୯୪୭ ମସିହା ମାର୍ଚ୍ଚ ୧୧ ତାରିଖରେ କଂଗ୍ରେସର ସାଧାରଣ ସଂପାଦକ ପଦରୁ ଇସ୍ତଫା ଦେଇ ଓଡ଼ିଶାରେ ସମାଜବାଦୀ ଦଳର ନେତୃତ୍ୱ ନିଅନ୍ତି । ତାଙ୍କର ନେତୃତ୍ୱରେ ୧୯୪୮ରୁ ୭୨ ପର୍ଯ୍ୟନ୍ତ ସୋସିଆଲିଷ୍ଟ ପାର୍ଟି ଓଡ଼ିଶାର ଜନ ମାନସରେ ଏକ ପ୍ରଭାବଶାଳୀ ଦଳ ରୂପେ ଜନ ସାଧାରଣଙ୍କର ଆସ୍ଥା ଭାଜନ ହୁଏ । ଏହି ୨୫ ବର୍ଷର ଫଳପ୍ରସୂ ସମୟ ସୀମା ଭିତରେ ଦ୍ୱିବେଦୀ ବହୁ କୃଷକ ସଂଗଠନ ଓ ଶ୍ରମିକ ସଂଗଠନର ଭିତ୍ତିପ୍ରସ୍ତର ସ୍ଥାପନ କରିଛନ୍ତି । ଭୂ ସଂସ୍କାର ଓ ସମାଜ ସଂସ୍କାର ପାଇଁ ଆନ୍ଦୋଳନର ଡାକରା ଦେଇଛନ୍ତି । ୧୯୬୧ର ମାର୍ଣ୍ଣାଘାଇ ଖୋଟବାଣ୍ଟ ସମ୍ମିଳନୀ, ୧୯୬୫ ସେପ୍ଟେମ୍ବର ପହିଲାରେ ଦରବୃଦ୍ଧି ବିରୋଧୀ ପଟୁଆର, ୧୯୬୬ ମାର୍ଚ୍ଚ ୧୯ରେ ଭୋକିଲା ପଟୁଆର ଓ ଜଳକର ବୃଦ୍ଧି ବିରୋଧୀ ପଟୁଆର ଉପରୋକ୍ତ ଭୂମିକାର କେତୋଟି ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଭୋଟ ରାଜନୀତିର ଦଉଡ଼ାରେ ଓଡ଼ିଶାବାସୀଙ୍କର ଅକୁଣ୍ଠ ସ୍ନେହ ଓ ସଦିଚ୍ଛା ହେତୁ ବହୁବାର ସେ କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାକୁ (ଉଭୟ ରାଜ୍ୟସଭା ଓ ଲୋକସଭା) ନିର୍ବାଚିତ ହୋଇଛନ୍ତି ଏବଂ ଅନେକ ଥର ଖଟିଖିଆ ମୂଲିଆ ଓ ଶ୍ରମିକ ଶ୍ରେଣୀ ସପକ୍ଷରେ ଆପଣାର ଯୁକ୍ତି ବାଢ଼ିଛନ୍ତି । ଏପରିକି ସ୍ଥଳ ବିଶେଷରେ ଉଚ୍ଚ ପଦାସୀନ ବହୁ ବ୍ୟକ୍ତିଙ୍କର ଦୁର୍ନୀତି ଓ ଶାସନଗତ ଅପାରଗତା ବିଷୟରେ ଦୃଢ଼ ସ୍ୱର ଉତ୍ତୋଳନ କରିଅଛନ୍ତି । ତାଙ୍କର ବ୍ୟବସ୍ଥାପକ ଜୀବନର ଉପଯୁକ୍ତ ମୂଲ୍ୟାୟନର ନମୁନା ଆମେ ପାଇ ପାରିବା ୧୦-୦୯-୯୫ର Times of India ସ୍ତମ୍ଭରୁ :

"He (Dwivedy) is perhaps at his best when attacking corruption, bribery and graft. In such occasions he reacts violently..."

ସପ୍ତଦଶକର ଆଦ୍ୟଭାଗରେ ଭାରତୀୟ ରାଜନୀତିରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଆବିର୍ଭାବ ବିଜୁଳିବା ଚମକ ଆଣିଦିଏ । ତାଙ୍କର ସମାଜବାଦୀ ପଦକ୍ଷେପ (ଯଥା : ଗରିବୀ ହଟାଓ, ହାତପାଣ୍ଠି ଉଚ୍ଛେଦ ଓ ବ୍ୟାଙ୍କ ଜାତୀୟ କରଣ) ଦେଶବାସୀଙ୍କ ମନରେ ପର୍ଯ୍ୟାପ୍ତ ଆଶାର ସଂଚାର କରାଏ । କ୍ରମ ସଙ୍କୁଚିତ ସମାଜବାଦୀ ଦଳ ଓ ତାର ନେତୃବର୍ଗ ଆକର୍ଷିତ ହୁଅନ୍ତି ଇନ୍ଦିରାଙ୍କ ବ୍ୟକ୍ତିତ୍ୱରେ । ତାଙ୍କ ସମାଜବାଦୀ ପଦକ୍ଷେପକୁ ସମର୍ଥନ କରି ସେମାନେ କଂଗ୍ରେସରେ ଯୋଗ ଦିଅନ୍ତି । ୧୯୭୨ରେ ସୁରେନ୍ଦ୍ରନାଥ

କଂଗ୍ରେସରେ ପୁଣି ସାମିଲ ହେଲେ । ମାତ୍ର ପରବର୍ତ୍ତୀ ସମୟରେ କଂଗ୍ରେସର କେତେକ ପଦକ୍ଷେପକୁ ଆପଣେଇ ନପାରି ନିଜର ରାଜନୈତିକ ସିଦ୍ଧାନ୍ତ ପରିବର୍ତ୍ତନ କଲେ ଏବଂ ୧୯୭୭ରେ ଜୟପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତିରେ (Total Revolution) ପୁଣି ନିଜକୁ ନିୟୋଜିତ କଲେ ।

ପରେ ସକ୍ରିୟ ରାଜନୀତିରୁ ନିଜକୁ ଦୂରେଇ ନେଇ ସେ ଆଉଥରେ ଗଠନମୂଳକ କାର୍ଯ୍ୟରେ ବ୍ରତୀ ହୋଇଛନ୍ତି । ମାତ୍ର ଯେତେବେଳେ ତାଙ୍କୁ ଖୋଜା ପଡ଼ିଛି, ସେ କର୍ତ୍ତବ୍ୟରେ ଅବହେଳା କରି ନାହାଁନ୍ତି । ଫଳତଃ ରାଷ୍ଟ୍ରପତିଙ୍କ ଦ୍ୱାରା ନିଯୁକ୍ତ ହୋଇ ୧୯୯୦ ମସିହାରେ ଅରୁଣାଚଳ ପ୍ରଦେଶ ପରି ସୀମାବର୍ତ୍ତୀ ରାଜ୍ୟର ରାଜ୍ୟପାଳ ଦାୟିତ୍ୱ ଗ୍ରହଣ କରି ନିଜର ଦାୟିତ୍ୱ ସୁଚାରୁ ରୂପେ ପାଳନ କରିଅଛନ୍ତି ।

ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କର ବ୍ୟକ୍ତିତ୍ୱର ସାମଗ୍ରିକ ଆକଳନ କଲେ ଆମେ ଏଇ ସିଦ୍ଧାନ୍ତରେ ଉପନୀତ ହେଉ ଯେ ସେ କାୟ-ମନୋ-ବାକ୍ୟରେ ଏକ ନିଷ୍ଠାପର ସମାଜବାଦୀ ଥିଲେ । ସମାଜବାଦ ତାଙ୍କ ପାଇଁ ଏକ ସୌଖୀନ ରାଜନୀତିର ବିଳାସ ନୁହେଁ ବା କ୍ଷମତା ରାଜନୀତିର ଆୟୁଧ ମଧ୍ୟ ନୁହେଁ । ସେ ଏକ ମୁକ୍ତ ପୁରୁଷ - ତ୍ୟାଗ ଓ ନିଷ୍ଠାର ପ୍ରତୀକ - ଏକ ଲେଖକୀୟ ସତ୍ତା ଯାହା ସତତ ସତ୍ୟ-ଶିବ-ସୁନ୍ଦରର ପୂଜାରୀ । ତାଙ୍କର ଆତ୍ମ ଜୀବନୀ ''ମୋ ଜୀବନ ସଂଗ୍ରାମ'' ଏକ ରାଜନୈତିକ ଗ୍ରନ୍ଥ । ତାଙ୍କର ବିଚାର ଶୁଦ୍ଧତା ଓ ସ୍ୱଚ୍ଛ ଚିନ୍ତନ ଓ ସ୍ଥଳ ବିଶେଷରେ ଆତ୍ମ ସମାଲୋଚନାର ନିଚ୍ଛକ ଦୃଷ୍ଟାନ୍ତ ଆମେ ପାଇ ପାରିବା ଏଇ ମୂଲ୍ୟବାନ ଗ୍ରନ୍ଥଟିରେ । ବନ୍ଦୀ ଜୀବନରେ କାରାଗାରର ନିଭୃତ କୋଠରୀ ଭିତରେ ସେ ଅନୁବାଦ କରିଛନ୍ତି ନେହେରୁଙ୍କର Glimpses of World History (ବିଶ୍ୱ ଇତିହାସ), An Autobiography (ଆତ୍ମ ଜୀବନୀ) । ତା ଛଡ଼ା 'ସାରଥୀ', 'କୃଷକ' ଓ 'କ୍ରାନ୍ତିପଥ' ଇତ୍ୟାଦି ପତ୍ରିକାର ସଂପାଦନା ଓ ପିଲାମାନଙ୍କ ପାଇଁ ପାଠ୍ୟ ପୁସ୍ତକ ରଚନାରେ ତାଙ୍କର କଲମ ସଦା ଗତିଶୀଳ ।

ସମୟର ସର୍ବଗ୍ରାସୀ ପ୍ରବାହରେ କେତେ ଯେ ପଦବୀ, ପ୍ରତିଷ୍ଠା ଓ ପ୍ରାଚୁର୍ଯ୍ୟର ବଡ଼ିମା ହଜିଯାଇଛି ଓ ହଜିଯିବ ତାର ଇୟତ୍ତା ନାହିଁ । ମାତ୍ର ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କର ସମ୍ବେଦନଶୀଳ ଚେତନା ଓ ବୈପ୍ଳବିକ ଉନ୍ମୁଖଭାବ ଆମର ଅବଚେତନରେ ଏବେ ବି ଭାସ୍ୱର । ତେଣୁ ସେଇ ମହୀୟାନ ସତ୍ତା ନିକଟରେ ପ୍ରତ୍ୟେକ ଓଡ଼ିଆର ବିନମ୍ର ପ୍ରଣତି :

ହେ ଆଲୋକିତ ପଥଚାରୀ, ତୁମରି ଆଶିଷ ବର୍ଷାରେ ଆଜିର ଦିଶାହରା ରାଜନୀତି କୂଳ କିନାରା ପାଉ । ତୁମର ପଦଚିହ୍ନକୁ ଅନୁସରଣ କରି ଆଜିର ପଥହୁଡ଼ା ରାଜନୀତିର ମଙ୍ଗୁଆଳ ଶପଥ ନେଉ, ଠିକ୍ ତୁମରି ପରି :

''ମୁଁ ସର୍ବାନ୍ତକରଣରେ ସେବକଟିଏ ହେବି ଦଧୀଚି ଋଷି ଭଳି''

---

ଏଚ. ଆଇ. ଜି. ୧/୮୩
ବିଡ଼ିଏ କଲୋନୀ, କପିଳ ପ୍ରସାଦ
ଭୁବନେଶ୍ୱର - ୨

## ଉନ୍ନତ ରାଷ୍ଟ୍ରଗୁଡ଼ିକ ଅନୁନ୍ନତ ରାଷ୍ଟ୍ରକୁ ଆର୍ଥିକ ସହାୟତା ପାଇଁ ଆଗେଇ ଆସିବା ଉଚିତ

**ମୁଖ୍ୟମନ୍ତ୍ରୀ**

ବିକଶିତ ରାଷ୍ଟ୍ରମାନେ ଅନୁନ୍ନତ ରାଷ୍ଟ୍ରଗୁଡ଼ିକର ସର୍ବାଙ୍ଗୀନ ଉନ୍ନତି ପାଇଁ ଆର୍ଥିକ ସହାୟତା ପ୍ରଦାନ କଲେ ସେମାନଙ୍କର ଆର୍ଥିକ ଅବସ୍ଥାରେ ଦ୍ରୁତ ବିକାଶ ଘଟିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରକାଶ କରିଛନ୍ତି ।

ଜାନୁଆରୀ ୧୬ ତାରିଖରେ ଭୁବନେଶ୍ୱରସ୍ଥ ଓବେରାଇ ହୋଟେଲ ଠାରେ ''ଅନୁଷ୍ଠିତ ଡୋନର୍ସ ମିଟ'' କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଯୋଗ ଦେଇ ବୈଦେଶିକ ପୁଞ୍ଜି ପ୍ରଦାନକାରୀମାନଙ୍କୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ପ୍ରାକୃତିକ ସଂପଦରେ ଭରପୁର ଓଡ଼ିଶା ଭଳି ଏକ ରାଜ୍ୟର ବିକାଶ କ୍ଷେତ୍ରରେ ସହଯୋଗ କରିବା ପାଇଁ ଆହ୍ୱାନ ଜଣାଇଥିଲେ ।

ସଂପ୍ରତି ରାଜ୍ୟରେ ଏକ ସ୍ଥିର ସରକାର ପ୍ରତିଷ୍ଠା ହୋଇ ଥିବାରୁ ଏବଂ ଅଙ୍ଗୀକାରବଦ୍ଧ ଅମଲାତନ୍ତ୍ର ରହି ଥିବାରୁ ରାଜ୍ୟରୁ ଦାରିଦ୍ର୍ୟ ଦୂର କରିବା କାର୍ଯ୍ୟକ୍ରମ ନିଶ୍ଚିତ ସଫଳ ହେବ । ଏଥିପାଇଁ ଜାତୀୟ ତଥା ଆନ୍ତର୍ଜାତିକ ପୁଞ୍ଜି ବିନିଯୋଗକାରୀ ସଂସ୍ଥାଗୁଡ଼ିକ ମଧ୍ୟ ଆଗ୍ରହ ପ୍ରକାଶ କରିଛନ୍ତି ବୋଲି ଶ୍ରୀ ପଟ୍ଟନାୟକ ପ୍ରକାଶ କରିଥିଲେ । ଦୁଇ ହଜାର ମସିହା ସୁଦ୍ଧା ଉତ୍ପାଦନକୁ ଦ୍ୱିଗୁଣିତ କରିବା ସହିତ ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ ଯୋଗାଣ, ଜଳସେଚନ ବ୍ୟବସ୍ଥା, ଆଦିବାସୀ ଏବଂ ହରିଜନ ସଂପ୍ରଦାୟର ଆର୍ଥିକ ତଥା ସାମାଜିକ ବିକାଶ, ଶିକ୍ଷିତ ବେକାର ଯୁବକମାନଙ୍କୁ ଆତ୍ମନିଯୁକ୍ତି ପ୍ରଦାନ ଆଦି ସଂପର୍କରେ ଆବଶ୍ୟକ ଯୋଜନାମାନ ପ୍ରସ୍ତୁତ ହୋଇ ଥିବା ସଂପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ଏହି କାର୍ଯ୍ୟକ୍ରମକୁ ଆଗେଇ ନେବା କ୍ଷେତ୍ରରେ ପୁଞ୍ଜି ବିନିଯୋଗକାରୀ ସଂସ୍ଥାମାନଙ୍କର ସହଯୋଗ ଏକାନ୍ତ ଆବଶ୍ୟକ ବୋଲି ଶ୍ରୀ ପଟ୍ଟନାୟକ ମତବ୍ୟକ୍ତ କରିଥିଲେ ।

ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଏହି କାର୍ଯ୍ୟକ୍ରମରେ ଯୋଗ ଦେଇ ଆଗାମୀ ଦୁଇ ହଜାର ମସିହା ମଧ୍ୟରେ ରାଜ୍ୟରେ ବୃହତ, ମଧ୍ୟମ, କ୍ଷୁଦ୍ର ଏବଂ ଉଠାଜଳସେଚନ ମାଧ୍ୟମରେ ୫୦ ପ୍ରତିଶତ ଚାଷ ଜମିରେ ଜଳସେଚନ ବ୍ୟବସ୍ଥା କରିବା ପାଇଁ ସରକାର ଅଙ୍ଗୀକାରବଦ୍ଧ ବୋଲି ପ୍ରକାଶ କରିଥିଲେ ଏବଂ ଏ ଦିଗରେ ଗତ ଦୁଇବର୍ଷ ମଧ୍ୟରେ ୯ ପ୍ରତିଶତ ସଫଳତା ହାସଲ ହୋଇ ପାରିଛି ବୋଲି ମଧ୍ୟ ସୂଚନା ଦେଇଥିଲେ । ପୁଞ୍ଜି ପ୍ରଦାନକାରୀ ସଂସ୍ଥାମାନେ ରାଜ୍ୟରେ ଜଳସେଚନ ବ୍ୟବସ୍ଥା, କୃଷି ତଥା କୃଷି ଶିଳ୍ପର ବିକାଶ ଏବଂ ପର୍ଯ୍ୟଟନ ଆଦି କ୍ଷେତ୍ରରେ ପୁଞ୍ଜି ବିନିଯୋଗ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ରାଜ୍ୟରେ ଗଚ୍ଛିତ ଥିବା ଖଣିଜ ସଂପଦଗୁଡ଼ିକ ଉପଯୁକ୍ତଭାବେ ବିନିଯୋଗ କରାଗଲେ ଏହାର ମୂଲ୍ୟ ବୃଦ୍ଧି ଘଟିବା ସହିତ ରାଜ୍ୟକୁ ପ୍ରଚୁର ପରିମାଣର ଅର୍ଥ ମିଳିପାରିବ ବୋଲି ଶ୍ରୀ ବିଶ୍ୱାଳ ସୂଚନା ଦେଇଥିଲେ ।

କେନ୍ଦ୍ର ଅର୍ଥ ମନ୍ତ୍ରଣାଳୟର ଅତିରିକ୍ତ ଶାସନ ସଚିବ ଶ୍ରୀ ଇନ୍ଦରଜୀତ୍ ଖାନ୍ନା ବିଭିନ୍ନ ଉନ୍ନୟନ ବାବଦରେ ମିଳିଥିବା ବୈଦେଶିକ ସହାୟତା ସଂପର୍କରେ ସୂଚନା ପ୍ରଦାନ କରିଥିଲେ ।

ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ବୈଠକରେ ଅଧ୍ୟକ୍ଷତା କରି ରାଜ୍ୟବାସୀଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ କୃଷି, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ ବ୍ୟବସ୍ଥା, ଶକ୍ତି ଉତ୍ପାଦନ ବୃଦ୍ଧି ଏବଂ ବୃହତ୍ ଶିଳ୍ପ ପ୍ରତିଷ୍ଠାର ଆବଶ୍ୟକତା ରହିଛି ବୋଲି ପ୍ରକାଶ କରିଥିଲେ ।

# ଓଡ଼ିଶାରେ ଶିକ୍ଷାର ପ୍ରଗତି ଓ ନାରୀ ସାକ୍ଷରତା

*ଶ୍ରୀ ସତ୍ୟନାରାୟଣ ମହାପାତ୍ର*

ଏକ ସୁସ୍ଥ ଗଣତାନ୍ତ୍ରିକ ଧାରାର ସୁରକ୍ଷା ପାଇଁ ରାଜନୈତିକ ଦୃଷ୍ଟିକୋଣରୁ ଦେଶରେ ସାଧାରଣ ଶିକ୍ଷାର ଯେତିକି ଆବଶ୍ୟକତା ରହିଛି ତାଠାରୁ ଅଧିକ ଆବଶ୍ୟକତା ରହିଛି ଏକ ବିକାଶଶୀଳ ରାଷ୍ଟ୍ରର ଅର୍ଥନୈତିକ ବିକାଶ ଦୃଷ୍ଟିରୁ । କୌଣସି ଦେଶର ସର୍ବାଙ୍ଗୀନ ଉନ୍ନତି ଓ ଜନସାଧାରଣଙ୍କ ଶିକ୍ଷାର ସ୍ତର ସେହି କାରଣରୁହିଁ ଅଙ୍ଗାଙ୍ଗୀଭାବେ ଜଡ଼ିତ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ପରାଧୀନ ଭାରତର ଶାସକଗଣ ଅର୍ଥନୈତିକ ଶୋଷଣକାରୀ ଭାବରେ ଚରମ ସୀମାରେ ପହଞ୍ଚିଥିଲେ ସୁଦ୍ଧା ଦେଶରେ ଉଚ୍ଚ ଶିକ୍ଷାର ବିକାଶଧାରା ସେତେଟା ଚଳ ଚଞ୍ଚଳ ହୋଇପାରି ନଥିଲା । କାରଣ ଇଂରେଜ ଶାସକମାନଙ୍କ ଅସଲ ଉଦ୍ଦେଶ୍ୟ ଥିଲା, ସେମାନଙ୍କ ଜୟଯାତ୍ରା ପଥରେ ସହାୟକ ଗୋଷ୍ଠୀ ତୟାର କରିବା -ଶାସନ କାର୍ଯ୍ୟ ପରିଚାଳନା କରିବାରେ ସାହାଯ୍ୟକାରୀ ପ୍ରସ୍ତୁତ କରିବା । ତେବେ ଭାରତୀୟ ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ଭିତରେ ଗଣତାନ୍ତ୍ରିକ ସରକାର ଦେଶରେ ଶିକ୍ଷାର ବିସ୍ତାର ବିକାଶ ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ପରିଣାମତଃ ଦେଶରେ ଯାହାକିଛି ଉନ୍ନତି ସମ୍ଭବପର ହୋଇ ପାରିଛି ।

ତେବେ ସ୍ୱାଧୀନତାର ପଚାଶ ବର୍ଷ ପାଳନ ଅବସରରେ ଦେଶରେ ଶିକ୍ଷାର ସ୍ତର ବିଷୟରେ ବିଚାର ଆଲୋଚନା କଲାବେଳେ ପରିସ୍ଥିତି ସେତିକି ବିଶେଷ ଉତ୍ସାହପ୍ରଦ ମନେହୁଏ ନାହିଁ । ପଚାଶ ବର୍ଷର ସ୍ୱାଧୀନତା କିଛି କମ୍ କଥା ନୁହେଁ । ୧୯୯୧ ଜନଗଣନାର ତଥ୍ୟ ଅନୁଯାୟୀ ଆମ ଦେଶରେ ପ୍ରତି ଶହେଜଣ ବ୍ୟକ୍ତିଙ୍କ ମଧ୍ୟରୁ ମାତ୍ର ୫୨ ଜଣ ସାକ୍ଷର । ସେହି ସଂଖ୍ୟା ଓଡ଼ିଶା ପ୍ରଦେଶ ପାଇଁ ଆହୁରି କମ୍ । ଆମ ରାଜ୍ୟରେ ଶତକଡ଼ା ୪୯ ଜଣ ସାକ୍ଷର ଥିବାବେଳେ ୫୧ ଜଣ ନିରକ୍ଷର ରୂପେ ପରିଗଣିତ । ଦେଶର ୩୧ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳ ମଧ୍ୟରେ ଶିକ୍ଷିତ ବ୍ୟକ୍ତିଙ୍କ ଆନୁପାତିକ ହାର ବିଚାରକୁ ନିଆଗଲେ ଓଡ଼ିଶାରେ ସ୍ଥାନ ୨୪ତମ ।

ସାକ୍ଷରତା ହାରକୁ ଭିତ୍ତିକରି ସେଗୁଡ଼ିକ ସ୍ଥାନ ନିରୂପଣ କରାଗଲା ବେଳେ ଜାତୀୟ ସ୍ତରରେ ଜାମ୍ମୁ ଓ କାଶ୍ମୀର ରାଜ୍ୟକୁ ବିଚାର ପରିସରଭୁକ୍ତ କରାଯାଇ ପାରିନାହିଁ । ସେଠିକାର ସାମାଜିକ ପରିସ୍ଥିତି, ରାଜନୀତିକ ଅବସ୍ଥା ତଥା ପ୍ରଶାସନିକ ଦୃଷ୍ଟିକୋଣରୁ ସେଠାରେ ୧୯୯୧ ମସିହା ବେଳେ ଜନଗଣନା ସମ୍ପାଦିତ ହୋଇ ନପାରିବା ହେଉଛି ତାର କାରଣ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଯଥାଯଥଭାବେ ବୁଝି ପାରିବା ସହ ଲେଖି ଏବଂ ପଢ଼ି ପାରୁଥିବା ବ୍ୟକ୍ତିବୃନ୍ଦଙ୍କୁ ସାକ୍ଷରଭାବେ ଗ୍ରହଣ କରାଯାଇଛି । ସେହି ଦୃଷ୍ଟିରୁ ଛଅ ବର୍ଷ ବୟସ ପର୍ଯ୍ୟନ୍ତ ଦେଶର ସମସ୍ତ ଶିଶୁ/କିଶୋରଗଣଙ୍କୁ ସାକ୍ଷର ତାଲିକାରୁ ବାଦ୍ ଦିଆ ଯାଇଛି । ଯୋଜନା କମିଶନ୍ ତଥା ମାନବ ସମ୍ବଳ ବିକାଶ ବିଭାଗ ତରଫରୁ ନିର୍ଦ୍ଧାରିତ ସେହି ସଂଜ୍ଞା ପ୍ରୟୋଗ କରାଯାଇ ବ୍ୟକ୍ତିର 'ବୁଝି ପାରିବା' କ୍ଷମତା ହାସଲକୁ ଯଥାଯଥ ଗୁରୁତ୍ୱ ଆରୋପ କରାଯାଇ ସାକ୍ଷର ବ୍ୟକ୍ତିଙ୍କୁ ଚିହ୍ନଟ କରାଯାଇଛି । ଜଣେ ସାକ୍ଷର ଗଣନାଭୁକ୍ତ ହେବାକୁ ହେଲେ କେବଳ ନିଜ ନାମ ଦସ୍ତଖତ କରିପାରିଲେ କିମ୍ବା କେବଳ ଲେଖି ଜାଣିଲେ ଅଥବା ପଢ଼ି ଜାଣିଲେ ଚଳିବ ନାହିଁ । ଉଭୟ ଲେଖି-ପଢ଼ି ପାରିବା କ୍ଷମତା ସହ ତାହାକୁ ବୁଝି ପାରିବା ସାମର୍ଥ୍ୟ ହାସଲ କରିଥିବା ଆବଶ୍ୟକ । ଅତଏବ ପ୍ରୟୋଗାତ୍ମକ ଦୃଷ୍ଟିରୁ ସାକ୍ଷରତା ହାର ନିର୍ଣ୍ଣୟ କରାଯିବା ବେଳେ ସାତ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କମାନଙ୍କୁ ହିଁ ଗ୍ରହଣ କରାଯାଇଛି । ସେହି ପଟ୍ଟଭୂମିରୁ ଦେଖିଲେ ଆମ ଦେଶ ତଥା ରାଜ୍ୟର ଏବଂ ବିଶେଷ କରି ଉତ୍କଳୀୟ ନାରୀମାନଙ୍କ ସ୍ଥିତି ନିମ୍ନ ସାରଣୀରୁ ସ୍ପଷ୍ଟ ବାରିହେବ ।

| | ଭାରତ | ଓଡ଼ିଶା | ଓଡ଼ିଶା ମହିଳା |
|---|---|---|---|
| ମୋଟ ଜନସଂଖ୍ୟା | ୮୩୮,୫୮୩,୯୮୮ | ୩୧,୬୫୯,୭୩୬ | ୧୫,୫୭୫,୫୯୦ |
| ଛଅ ବର୍ଷରୁ କମ୍ ଶିଶୁ/କିଶୋର କିଶୋରୀ | ୧୫୦,୪୨୧,୧୭୫ | ୫,୩୪୭,୫୦୧ | ୨,୬୨୮,୨୮୨ |
| ସାତ ବର୍ଷରୁ ଊର୍ଦ୍ଧ୍ୱ ଜନସଂଖ୍ୟା | ୬୮୮,୧୬୨,୮୧୩ | ୨୬,୩୧୨,୨୩୫ | ୧୨,୯୬୭,୩୦୮ |
| ମୋଟ ସାକ୍ଷର | ୩୫୯,୨୮୪,୪୧୭ | ୧୨,୯୧୫,୯୧୬ | ୪୪,୯୬,୫୨୬ |
| ସାକ୍ଷରତା ହାର | ୫୨.୨୧ | ୪୯.୦୯ | ୩୪.୬୮ |

ଆମ ଦେଶର ସ୍ୱାଧୀନ ସରକାର ଗଠିତ ହେବାର ଦୀର୍ଘ ପଚାଶ ବର୍ଷ ବିତି ଯାଇଥିଲେ ସୁଦ୍ଧା ଜାତୀୟ ସ୍ତରରେ ସାକ୍ଷରତା ହାର ୫୨.୨୧ ହିସାବ କରାଯାଇଥିବା ବେଳେ ତାହା ଆମ ରାଜ୍ୟ ପାଇଁ ତଥାପି ଅନେକ ପଛରେ - ୪୯.୦୯ଭାଗ । ସେହି ତଫାତ୍ ହାରାହାରିଭାବେ ୩.୧୨ ଭାଗ ହୋଇଥିଲେ ସୁଦ୍ଧା ଲିଙ୍ଗ ଭେଦରେ ତର୍ଜମା କଲାବେଳେ ତାହା ପୁରୁଷଙ୍କ ତୁଳନାରେ ନାରୀମାନଙ୍କ କ୍ଷେତ୍ରରେ ଅଧିକ ପ୍ରସାରିତ ମନେ ହୋଇଥାଏ ।

ସାକ୍ଷରତା ହାର ଓ ତାହାର ଅଭିବୃଦ୍ଧି ସଂପର୍କରେ ଦେଶର ଅନ୍ୟାନ୍ୟ ରାଜ୍ୟସହ ତୁଳନାତ୍ମକ ଦୃଷ୍ଟିରୁ ଆଲୋଚନା କଲାବେଳେ ଆସାମ ରାଜ୍ୟକୁ ବାଦ୍ ଦିଆଗଲେ ଆମରାଜ୍ୟ ୨୩ ତମ ସ୍ଥାନରେ ସ୍ଥାନିତ । ୧୯୮୧ ବେଳେ ଓଡ଼ିଶାରେ ସେଇ ହାର ୪୦.୯୭ ଥାଇ ସୁଦ୍ଧା ସେଇ ୨୩ତମ ସ୍ଥାନରେ ରହିଥିଲା । ଦୀର୍ଘ ଏକ ଦଶକ ମଧ୍ୟରେ ଆମ ରାଜ୍ୟରେ ଯଥେଷ୍ଟ ଅଧିକ ସଂଖ୍ୟାରେ ବୃଦ୍ଧି ପାଇଥିବା ଶିକ୍ଷିତଙ୍କୁ ଗଣନାଭୁକ୍ତ କରାଯାଇଥିଲେ ମଧ୍ୟ ଜାତୀୟ ଦୃଶ୍ୟପଟରେ ଓଡ଼ିଶା କେବଳ ତାର ପୂର୍ବ ସ୍ଥିତି ହିଁ ବଜାୟ ରଖି ପାରିଛି । ଉଲ୍ଲେଖଯୋଗ୍ୟ ଯେ ୧୯୮୧ ବେଳେ ଜାତୀୟ ସାକ୍ଷରତାର ହାର ୪୩.୬୭% ଭାଗ ଥିବା ବେଳେ ଦଶ ବର୍ଷର ବ୍ୟବଧାନ ପରେ ବର୍ତ୍ତମାନ ତାହା ୫୨.୧୯ରେ ପହଞ୍ଚି ପାରିଛି । ସେହି କ୍ରମରେ ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ମଧ୍ୟ ସେହିଭଳି ଅଭିବୃଦ୍ଧିମାନ ସଂଘଟିତ ହୋଇଛି । ଅବଶ୍ୟ ଏଠାରେ ଜାତୀୟ ସାକ୍ଷରତା ହାର ଉପସ୍ଥାପିତ ହୋଇଛି ଆସାମ ତଥା ଜାମ୍ମୁ ଏବଂ କାଶ୍ମୀର -ଉଭୟ ରାଜ୍ୟକୁ ବାଦ୍‌ଦେଇ ।କାରଣ ବିଭିନ୍ନ କାରଣରୁ ୧୯୮୧ରେ ଆସାମରେ ଜନଗଣନା ହୋଇପାରି ନଥିଲା । ତେଣୁ ତୁଳନାତ୍ମକ ଚିତ୍ର ଉପସ୍ଥାପିତ କଲାବେଳେ ସେଇ ଉଭୟ ରାଜ୍ୟକୁ ବାଦ ଦିଆ ଯାଇଛି ।

ବିଗତ ଦଶକ ମଧ୍ୟରେ ସାକ୍ଷରତା ହାର ଜାତୀୟ ସ୍ତରରେ ୮.୫୨ ବୃଦ୍ଧି ପାଇଥିବାବେଳେ ଆମ ଓଡ଼ିଶାରେ ତାହା ଥିଲା ୮.୧୨ । କିନ୍ତୁ ଦେଶର ୧୯ଟି ରାଜ୍ୟ ତଥା କେନ୍ଦ୍ର ଶାସିତ ପ୍ରଦେଶରେ ସେଭଳି ଅଭିବୃଦ୍ଧି ହାର ଜାତୀୟ ସ୍ତରଠାରୁ ଅଧିକ ଥିବା ବେଳେ ୧୧ଟି ରେ ତାହା କମ୍ ବୋଲି ଜଣା ଯାଇଛି । କିନ୍ତୁ ତା ସତ୍ତ୍ୱେ ଓଡ଼ିଶା ଭଳି କେରଳ, ମହାରାଷ୍ଟ୍ର, ମଣିପୁର, ରାଜସ୍ଥାନ, ତ୍ରିପୁରା ଓ ଉତ୍ତର ପ୍ରଦେଶ ଭଳି ରାଜ୍ୟ-ଗୁଡ଼ିକ ସମେତ କେନ୍ଦ୍ର ଶାସିତ ଅଞ୍ଚଳ ଆଣ୍ଡାମାନ ଓ ନିକୋବର ଦୀପପୁଞ୍ଜ, ଡାମନ ଓ ଡ଼ିଉ ଦୀପପୁଞ୍ଜ ତଥା ପଣ୍ଡିଚେରୀ ଜାତୀୟ ଦୃଶ୍ୟପଟରେ ସାକ୍ଷରତା ହାର ଅନୁଯାୟୀ ସେମାନଙ୍କ ସେଇ ପୂର୍ବ କ୍ରମକୁ ବଜାୟ ରଖିଛନ୍ତି । କେରଳ ରାଜ୍ୟବାସୀଙ୍କ ମଧ୍ୟରୁ ଶତକଡ଼ା ୮୯.୯୧ ଭାଗ ବ୍ୟକ୍ତି ଶିକ୍ଷିତ ଭାବେ ଗୃହୀତ ହୋଇ ସେହି ରାଜ୍ୟ ସର୍ବଭାରତୀୟ କ୍ଷେତ୍ରରେ ପ୍ରଥମ ସ୍ଥାନରେ ସ୍ଥାନିତ ଏବଂ ବିଗତ ଦଶନ୍ଧିର ଗଣନାବେଳେ ମଧ୍ୟ ତାହାର ୮୧.୫୬ ଭାଗ ଲୋକଙ୍କୁ ସାକ୍ଷର ରୂପେ ଚିହ୍ନଟ କରାଯାଇ ଦେଶର ପ୍ରଥମ ଶିକ୍ଷିତ ରାଜ୍ୟ ରୂପେ ଗୃହୀତ ହୋଇଥିଲା । ସେଇ ଉଜ୍ଜ୍ୱଳ ପରମ୍ପରା କେରଳ ରକ୍ଷା କରିପାରିଛି । ବର୍ତ୍ତମାନ ତାହାର ପଛକୁ ରହିଛି ପୂର୍ବାଞ୍ଚଳର ଏକ କ୍ଷୁଦ୍ର ରାଜ୍ୟ ମିଜୋରାମ । ସେଇଠି ସାକ୍ଷରତାର ହାର ୮୨.୨୭ ଭାଗ । ସେହିଭଳି ଜାତୀୟ ଦୃଶ୍ୟପଟରୁ ଦେଖିଲେ ବିହାର ରାଜ୍ୟରେ ସାଧାରଣ ସାକ୍ଷରତା ହାର ୩୮.୪୦ ଭାଗ ରହି ସର୍ବ ନିମ୍ନରେ ସ୍ଥାନିତ । ତାଠାରୁ ସାମାନ୍ୟ ଅଧିକ ଥାଇ ୩୮.୫୫ରେ ରହିଛି ରାଜସ୍ଥାନ । ତେବେ ମୋଟାମୋଟି ଭାବେ ଦେଖିଲେ ଦେଶର ରାଜ୍ୟଗୁଡ଼ିକ ତୁଳନାରେ ଦାଦ୍ରା ଓ ନଗର ହାବେଳୀକୁ ବାଦ ଦେଇ କେନ୍ଦ୍ରଶାସିତ ଅଞ୍ଚଳଗୁଡ଼ିକରେ ସାଧାରଣ ସାକ୍ଷରତାର ହାର ଅଧିକ । ସେଗୁଡ଼ିକରେ ଶତକଡ଼ା ୭୦ ଭାଗରୁ ଅଧିକ ଲୋକ ଶିକ୍ଷିତ ଶ୍ରେଣୀଭୁକ୍ତ ।

ସାଧାରଣ ଭାବେ ଏହାହିଁ ଜାତୀୟ ଦୃଶ୍ୟପଟରେ ଶିକ୍ଷାର ସ୍ଥିତି । ଆମ ଦେଶରେ ନାରୀ ଶିକ୍ଷାର ସ୍ଥିତି ଓ ବିକାଶ ବିଷୟ ଚିନ୍ତା କଲାବେଳେ ଅତୀତର ସ୍ମୃତି ରୋମନ୍ଥିତ ହୋଇଯାଏ ଆପେଆପେ । ଅତୀତର ଗୁରୁକୁଳ ଆଶ୍ରମ; ସେଠି କନ୍ୟାମାନଙ୍କ ମଧ୍ୟ ଉପସ୍ଥିତି ଅଧ୍ୟାପନା ପାଇଁ । ଅତୀତର ନାରୀ ସମାଜରୁ ମୁଷ୍ଟିମେୟ ହେଲେ ସୁଦ୍ଧା କେତେକଙ୍କ ପାଣ୍ଡିତ୍ୟର ବିକାଶ । ତଥାପି ନାରୀ ଦୀର୍ଘକାଳ ଧରି ଅବହେଳିତ ! ସ୍ୱାଧୀନ ଭାରତୀୟ ସମ୍ବିଧାନରେ ନାରୀକୁ ପୁରୁଷର ସମକକ୍ଷ ରୂପେ ପ୍ରତି କ୍ଷେତ୍ରରେ ବିବେଚନା କରାଯାଇଥିଲେ ସୁଦ୍ଧା ପୁରୁଷ ପ୍ରଧାନ ସମାଜରେ ନାରୀ ସମାନ ଆସନରେ ଏ ପର୍ଯ୍ୟନ୍ତ ଆସୀନ ହୋଇଥିବା ମନେ ହୁଏ ନାହିଁ । ଶିକ୍ଷାର ହାର ତର୍ଜମା ତାହାର ଏକ ପ୍ରକୃଷ୍ଟ ଉଦାହରଣ ।

ବର୍ତ୍ତମାନ ସର୍ବ ଭାରତୀୟ କ୍ଷେତ୍ରରେ ୬୪.୧୩ ଶତାଂଶ ପୁରୁଷ ସାକ୍ଷର ରୂପେ ପରିଗଣିତ ହେବାବେଳେ ନାରୀ ସାକ୍ଷରତାର ହାର ୩୯.୨୯ଭାଗ । ଅତଏବ ଆମ ସମାଜର ଅଧିକାଂଶ ନାରୀ ଅଶିକ୍ଷାର ଅନ୍ଧକାର ଭିତରେ ଜଡ଼ସଡ଼ ଏବଂ ସେହି କାରଣରୁ ଦେଶରେ ଶିକ୍ଷାର ସାଧାରଣ ହାର କମ୍ ହେବା ସ୍ୱାଭାବିକ । ତୁଳନାତ୍ମକ ଭାବରେ ଦେଖିଲେ ୩୪.୬୮ ହାର ସାକ୍ଷରତା ହାସଲ କରିଥିବା ଉତ୍କଳୀୟ ନାରୀଗଣ ଜାତୀୟ ସ୍ତରଠାରୁ ମଧ୍ୟ ଅଧିକ ମାତ୍ରାରେ ଅଶିକ୍ଷିତ । ଆମ ରାଜ୍ୟ ପାଇଁ ୬୩.୦୯ ହିସାବ ହୋଇଥିବା ବେଳେ ମହିଳାମାନଙ୍କ କ୍ଷେତ୍ରରେ ସେହି ତଫାତ୍ ହେଉଛି ୪.୬୧ ଭାଗ । ସ୍ଥୁଳ ଭାବରେ କହିବାକୁ ଗଲେ ଭାରତୀୟ ମହିଳା-ମାନଙ୍କ ମଧ୍ୟରୁ ପ୍ରତି ଶହେ ଜଣରେ ହାରାହାରି ୩୯ ଜଣ ଶିକ୍ଷିତ ମହିଳା ଥିବା ବେଳେ ପ୍ରତି ଶହ ଓଡ଼ିଶା ମହିଳାଙ୍କ ମଧ୍ୟରେ ପ୍ରାୟ ୩୫ ଜଣ ସାକ୍ଷର । ଜାତୀୟ ସ୍ତରରୁ ତାହା ଅନେକ କମ୍ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଦେଶର ୨୪ଟି ରାଜ୍ୟ ଓ ୭ ଟି କେନ୍ଦ୍ର ଅଞ୍ଚଳ ମଧ୍ୟରୁ ୧୭ଟି ରାଜ୍ୟ ଓ ଛଅଟି କେନ୍ଦ୍ରଶାସିତ ଅଞ୍ଚଳର ମହିଳାଗଣ ଓଡ଼ିଶାର ନାରୀମାନଙ୍କ ତୁଳନାରେ ଅଧିକ ହାରରେ ଶିକ୍ଷିତ ଥିବାବେଳେ ମାତ୍ର ଛଅଟି ରାଜ୍ୟ-ଆନ୍ଧ୍ର, ଅରୁଣାଚଳ ପ୍ରଦେଶ, ବିହାର, ମଧ୍ୟ ପ୍ରଦେଶ, ରାଜସ୍ଥାନ ଓ ଉତ୍ତର ପ୍ରଦେଶ ତଥା ଗୋଟିଏ କେନ୍ଦ୍ର ଶାସିତ ଅଞ୍ଚଳ-ଦାଦ୍ରା ଓ ନଗର ହାବେଳୀର ନାରୀ ଗଣ ଅଶିକ୍ଷିତ ।

ଶିକ୍ଷା କ୍ଷେତ୍ରରେ ସର୍ବ ଭାରତୀୟ ସ୍ତରରେ ସୁନାମ ବଜାୟ ରଖିଥିବା କେରଳ ରାଜ୍ୟର ମହିଳାଗଣ ସର୍ବାଧିକ ମାତ୍ରାରେ (ଶତକଡ଼ା ୮୬.୧୭ଭାଗ) ଶିକ୍ଷିତା । କେରଳ ପଛକୁ ରହିଛି ମିଜୋରାମ । ସେଠାରେ ସାଧାରଣ ଶିକ୍ଷାର ସ୍ତର ୮୨.୮୭ ଥିବାବେଳେ ମହିଳା ସାକ୍ଷରତାର ହାର ୭୮.୬୦ । ଅତଏବ ଶତକଡ଼ା ପ୍ରାୟ ୯୫ ଭାଗ ଆଦିବାସୀ ଅଧ୍ୟୁଷିତ ମିଜୋରାମ ଭଳି ରାଜ୍ୟରେ ପ୍ରତି ଶହେ ଜଣ ମହିଳାଙ୍କ ମଧ୍ୟରେ ପ୍ରାୟ ୭୯ ସାକ୍ଷର ରୂପେ ଗୃହୀତ ହୋଇଥିବା ବେଳେ ଦେଶର ସର୍ବନିମ୍ନ ମହିଳା ସାକ୍ଷରତା ହାର ଦୃଶ୍ୟମାନ ହୁଏ ରାଜସ୍ଥାନ ପାଇଁ । ସେଠି ମାତ୍ର ଶତକଡ଼ା ୨୦.୪୪ ଭାଗ ସାକ୍ଷର । ରାଜସ୍ଥାନ ସମେତ ପାଞ୍ଚଟି ରାଜ୍ୟ ଓ ଗୋଟିଏ କେନ୍ଦ୍ରଶାସିତ ଅଞ୍ଚଳରେ ନାରୀ ସାକ୍ଷରତାର ହାର ଶତକଡ଼ା ୩୦ରୁ ବି କମ୍ । ଅପର ପକ୍ଷରେ ଛଅଟି କେନ୍ଦ୍ର ଶାସିତ ଅଞ୍ଚଳ ଏବଂ ଆଠଟି ରାଜ୍ୟର ଅର୍ଦ୍ଧାଧିକ ମହିଳା ସାକ୍ଷର ଶ୍ରେଣୀଭୁକ୍ତ ।

ତଥାପି କ୍ରମାଗତଭାବେ ଦେଶରେ ଶିକ୍ଷାର ପ୍ରଗତି ତଥା ଶିକ୍ଷିତଙ୍କ ସଂଖ୍ୟାରେ ଅଭିବୃଦ୍ଧି ଆମ୍ଭମାନଙ୍କ ମନରେ ଉଜ୍ଜ୍ୱଳ ଭବିଷ୍ୟତ

ଆଶାର ସଞ୍ଚାର କରିଥାଏ । ପୁରୁଷମାନଙ୍କ ଭଳି ମହିଳାମାନେ ମଧ୍ୟ ଶିକ୍ଷା ପ୍ରାପ୍ତି ପାଇଁ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କରୁଥିବା ଏକ ଶୁଭ ଲକ୍ଷଣ । ବିଶେଷ କରି ଆମ ରାଜ୍ୟରେ ବିଗତ ଦଶକ ମଧ୍ୟରେ ପୁରୁଷ ମାନଙ୍କ ତୁଳନାରେ ନାରୀଗଣ ଅଧିକ ହାରରେ ଶିକ୍ଷିତ ହୋଇଥିବା ସୂଚନା ମିଳେ ।

| ସାକ୍ଷରତା ହାର | ୧୯୮୧ | ୧୯୯୧ | ବୃଦ୍ଧିହାର |
|---|---|---|---|
| ମୋଟ | ୪୦.୯୭ | ୪୯.୦୯ | ୮.୧୨ |
| ପୁରୁଷ | ୫୬.୪୫ | ୬୩.୦୯ | ୬.୬୪ |
| ମହିଳା | ୨୫.୧୪ | ୩୪.୬୮ | ୯.୫୪ |

କାରଣ ଯାହାହେଉ ଦଶବର୍ଷର ଗୋଟିଏ ପାହାଚ ସମୟ ଅତିକ୍ରମ କରିବା ମଧ୍ୟରେ ଆମ ରାଜ୍ୟର ମହିଳା ସମାଜ ପୁରୁଷମାନଙ୍କ ତୁଳନାରେ ଅଧିକ ସକ୍ରିୟ ହୋଇ ଉଠିଥିଲା ଶିକ୍ଷାଲାଭ କରିବା ପାଇଁ । ପରିଣାମତଃ, ନିଃସନ୍ଦେହରେ କୁହାଯାଇପାରେ ଯେ ସାଧାରଣ ସାକ୍ଷରତା ବୃଦ୍ଧିହାର ସେଇଥି ଯୋଗୁଁ ହିଁ ପ୍ରଭାବିତ ହୋଇ ପାରିଥିଲା । ଉତ୍କଳୀୟ ପୁରୁଷମାନଙ୍କ ସାକ୍ଷରତା ବୃଦ୍ଧିହାର ୬.୬୪ ରହିବାବେଳେ ନାରୀମାନଙ୍କ କ୍ଷେତ୍ରରେ ତାହାଥିଲା ୯.୫୪ । ପୁଣି ୧୯୮୧ ମସିହାରେ ପୁରୁଷ ଓ ନାରୀମାନଙ୍କ ମଧ୍ୟରେ ସାକ୍ଷରତା ହାରରେ ଥିବା ତଫାତ୍ ୩୧.୩୧ ଭାଗ । ୧୯୯୧ ବେଳକୁ କ୍ରମଶଃ କମି କମି ଆସି ୨୮.୩୧ ରେ ପହଞ୍ଚିଥିଲା । ଏକ ସୁସ୍ଥ ସମାଜ ଗଠନ ପାଇଁ ତାହା ଏକ ଶୁଭ ଲକ୍ଷଣ । ଶିକ୍ଷା ପ୍ରାପ୍ତିର ସୁଯୋଗ ସୁବିଧା ଉପଲବ୍ଧ ହେବା ତଥା ସାମାଜିକ ଚେତନାର ଉଦ୍ରେକ ହେବାଭଳି ବାହ୍ୟିକ ପ୍ରଭାବ ସାଙ୍ଗକୁ ସେଥିପାଇଁ ସେମାନଙ୍କ ଆନ୍ତରିକ ଅଭିଳାଷର ପରିପ୍ରକାଶ ଯୋଗୁଁ ତାହା ସମ୍ଭବପର ହୋଇ ପାରିଛି । ସେହି ଧାରାରେ ଉତ୍ତରୋ ଉନ୍ନତି ହେବା ଆବଶ୍ୟକ ।

ଆମ ରାଜ୍ୟରେ ନାରୀ ଶିକ୍ଷା ଉନ୍ନତିର ଧାରା ପୁରୁଷମାନଙ୍କ ତୁଳନାରେ ନୈରାଶ୍ୟଜନକ ନହେଲେ ସୁଦ୍ଧା ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ସେମାନଙ୍କ ସ୍ଥିତି ମନରେ ନୈରାଶ୍ୟଭାବ ସୃଷ୍ଟି କରିଥାଏ । ଆମ ରାଜ୍ୟର ଗ୍ରାମାଞ୍ଚଳଗୁଡ଼ିକରେ କମ୍ ସାକ୍ଷର କିନ୍ତୁ ସେଭଳି ପରିସ୍ଥିତି କେବଳ ଆମ ରାଜ୍ୟ କାହିଁକି ସାରା ଦେଶ ପାଇଁ ମଧ୍ୟ ପ୍ରାୟ ସମାନ । ସର୍ବ ଭାରତୀୟ କ୍ଷେତ୍ରରେ ଗ୍ରାମାଞ୍ଚଳଗୁଡ଼ିକରେ ହାରାହାରି ୩୦.୬୨ ମହିଳା ସାକ୍ଷର ତାଲିକାଭୁକ୍ତ ଥିବାବେଳେ ସହରାଞ୍ଚଳରେ ତାହା ଶତକଡ଼ା ୬୪.୦୫ ଭାଗ, ତାହାର ଦୁଇଗୁଣରୁ କିଛି ଅଧିକ । ଆମ ରାଜ୍ୟରେ ମଧ୍ୟ ସେଇ ଏକା ପରିସ୍ଥିତି । ଶତକଡ଼ା ୩୦.୬୯ ଭାଗ ଗ୍ରାମାଞ୍ଚଳବାସୀ ସାକ୍ଷର ତାଲିକାଭୁକ୍ତ ହୋଇଥିବା ବେଳେ ଓଡ଼ିଶାର ସହରାଞ୍ଚଳର ୬୧.୧୮ ଭାଗ ମହିଳା ଶିକ୍ଷିତା ହେବାର ଉର୍ଦ୍ଧ୍ୱରେ । ସେଭଳି ପରିସ୍ଥିତି ମଧ୍ୟ ସ୍ୱାଭାବିକ । ଚାକିରି, ଜୀବିକାର୍ଜନ, ଶିକ୍ଷା ବିଶେଷକରି ଉଚ୍ଚଶିକ୍ଷା ପ୍ରାପ୍ତିର ସୁବିଧା, ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା, ସ୍ୱାସ୍ଥ୍ୟ, ଗମନାଗମନ, ଆମୋଦ ପ୍ରମୋଦ ପ୍ରଭୃତିର ସହଜ ଉପଲବ୍ଧି ତଥା ସର୍ବୋପରି ସହରୀ ଜୀବନର ଆକର୍ଷଣ ବର୍ତ୍ତମାନ ଗ୍ରାମୀଣ ଜନତାଙ୍କୁ ସହରାଭିମୁଖୀ କରାଇବାରେ କିଛି ଆକସ୍ମିକତା ନାହିଁ । ବର୍ତ୍ତମାନର ସାମାଜିକ ଆଭିମୁଖ୍ୟ ହିଁ ସେଇୟା । ସେହି ସ୍ରୋତରେ ଗ୍ରାମାଞ୍ଚଳର ଅଶିକ୍ଷିତଙ୍କ ଅପେକ୍ଷା ଶିକ୍ଷିତ ବ୍ୟକ୍ତି ହିଁ ବେଶି ପ୍ରଭାବିତ । ତେଣୁ ଆମ ଦେଶରେ କ୍ଷିପ୍ର ଗତିରେ ସହରାଞ୍ଚଳ ସବୁ ଗଢ଼ି ଉଠୁଛି । ତାହା ଶାସକମାନଙ୍କ ପାଇଁ ସାଧାରଣ ଶିକ୍ଷା ସୁବିଧା ଉପଲବ୍ଧ ସମେତ ବିଭିନ୍ନ ସମସ୍ୟା ସୃଷ୍ଟି କରୁଛି । ସେତ ଗଲା ଭିନ୍ନ କଥା । ତେବେ ଶିକ୍ଷାର ସ୍ତର ବିଚାରରେ ଆମ ରାଜ୍ୟ ତଥା ଦେଶର ଅନ୍ୟାନ୍ୟ ଗ୍ରାମ୍ୟ ଅଞ୍ଚଳଗୁଡ଼ିକରେ ସହରାଞ୍ଚଳ ଅପେକ୍ଷା ନାରୀ ସାକ୍ଷରତାର ହାର ପ୍ରାୟତଃ ଅଧାଅଧି । ଅର୍ଥାତ୍ ପ୍ରତି ଶହେ ମହିଳାଙ୍କ ମଧ୍ୟରୁ ଗ୍ରାମାଞ୍ଚଳଗୁଡ଼ିକରେ ଯେତିକି ସାକ୍ଷର ଦେଖାଯାନ୍ତି ତାହାର ପ୍ରାୟ ଦୁଇଗୁଣ ଦେଖାଯାନ୍ତି ସହରାଞ୍ଚଳଗୁଡ଼ିକରେ । କିନ୍ତୁ ଦେଶର ସବୁରାଜ୍ୟ ପାଇଁ ତାହା ସମାନଭାବେ ପ୍ରଯୁଜ୍ୟ ନୁହେଁ ।

ରାଜସ୍ଥାନ ଭଳି ରାଜ୍ୟରେ ଗ୍ରାମାଞ୍ଚଳଗୁଡ଼ିକରେ ଦେଶର ସର୍ବନିମ୍ନ ୧୧.୫୯ ସାକ୍ଷରତା ଥିବାବେଳେ ସହରାଞ୍ଚଳ ପାଇଁ ତାହା ୫୦.୨୪ ଭାଗ । ଏହା ପରେ ଆସେ ବିହାରର ପାଳି । ସେଠାରେ ଏହି ହାର ଯଥାକ୍ରମେ ୧୭.୯୫ ଏବଂ ୫୫.୯୪ ଅପର ପକ୍ଷରେ ଗ୍ରାମାଞ୍ଚଳ ପାଇଁ ସର୍ବାଧିକ ସାକ୍ଷରତା ହାର ଦେଖାଯାଏ ଶିକ୍ଷିତ ରାଜ୍ୟ ରୂପେ ପରିଗଣିତ କେରଳରେ -ଯେଉଁଠି ଶତକଡ଼ା ୮୫.୧୨ ଗ୍ରାମାଞ୍ଚଳରେ ମହିଳା ଶିକ୍ଷିତ । ସେହିଭଳି ସର୍ବାଧିକ ହାରରେ ସହରୀ ଶିକ୍ଷିତ ନାରୀ ଦେଖା ଯାଆନ୍ତି ପୂର୍ବାଞ୍ଚଳରେ ଆଦିବାସୀ ଅଧ୍ୟୁଷିତ ପ୍ରଦେଶ ମିଜୋରାମରେ । ସେଠି ୯୧.୬୧ ଭାଗ ସହରୀ ମହିଳା ଓ ୬୭.୦୩ ଭାଗ ଗ୍ରାମାଞ୍ଚଳ ନାରୀ ସାକ୍ଷର ପରିସରଭୁକ୍ତ ।

ଆମ ରାଜ୍ୟରେ ମହିଳା ସାକ୍ଷରତାର ହାର ଆଶାଜନକ ଭାବେ ବୃଦ୍ଧି ପାଇ ପାରନ୍ତା ଯଦି ଆଦିବାସୀ ଓ ହରିଜନ ମହିଳାଗଣ ମିଜୋରାମର ଆଦର୍ଶ ଗ୍ରହଣ କରି ଶିକ୍ଷାପ୍ରତି ଅଧିକ ଆଗ୍ରହ ପ୍ରକାଶ କରନ୍ତେ । ଏପରିକି ରାଜ୍ୟର ସାଧାରଣ ଶିକ୍ଷା କ୍ଷେତ୍ରରେ ଅନଗ୍ରସରତାର କାରଣ ହିଁ ସେମାନଙ୍କ ନିରକ୍ଷର ପଣ । ଓଡ଼ିଶା ଜନସଂଖ୍ୟାର ୧୬.୨୦ ଭାଗ ଲୋକ ହରିଜନ ଥିବା ବେଳେ ୨୨.୨୧ ଭାଗ ଗିରିଜନ ଶ୍ରେଣୀଭୁକ୍ତ । ହରିଜନମାନେ ଶିକ୍ଷାକ୍ଷେତ୍ରରେ ୩୬.୭୮ ସାକ୍ଷରତା ହାର ସହ ତୁଳନାତ୍ମକ ଭାବରେ କିଞ୍ଚିତ୍ ଉନ୍ନତ ଥିବା ବେଳେ ରାଜ୍ୟର ପ୍ରାୟ ଏକ ଚତୁର୍ଥାଂଶ ଆଦିବାସୀଙ୍କ ସାକ୍ଷରତା ହାର ମାତ୍ର ୨୨.୩୧ ଭାଗ । ଜଙ୍ଗଲ ଅର୍ଥନୀତି ସହ ଘନିଷ୍ଠ ଭାବେ ସଂପୃକ୍ତ ରହି ଅର୍ଥନୈତିକ ଦୁର୍ବଳ ଶ୍ରେଣୀଭୁକ୍ତ ଆଦିବାସୀଗଣ ଏ ପର୍ଯ୍ୟନ୍ତ ଶିକ୍ଷାପ୍ରତି ବିତସ୍ପୃହ । ଆଜି ପାଇଁ କିଛି ଖାଦ୍ୟ ଅଛି ତ କାଲି କଥା ପଚାରୁଛି କିଏ ? ଏଭଳି ସାମାଜିକ, ଅର୍ଥନୈତିକ ଓ ମାନସିକ ସ୍ଥିତି ଭିତରେ ସେମାନଙ୍କ ମଧ୍ୟରେ ନାରୀ ସାକ୍ଷରତାର ସ୍ଥିତି ସ୍ୱଷ୍ଟ ଅନୁମେୟ ।

ତଥାପି ସାକ୍ଷରତା ହାରର ଅଭିବୃଦ୍ଧି , ବିଶେଷ କରି ଓଡ଼ିଶାରେ ନାରୀ ଶିକ୍ଷା ଦିଗରେ ଦ୍ରୁତ ଅଗ୍ରଗତିର ଧାରା କେବଳ ଅବ୍ୟାହତ ରଖିବା ଲାଗି ପ୍ରୟାସ କରାଯାଇ ତାହାକୁ ଦ୍ରୁତତର କରାଯିବା ପାଇଁ ଉଦ୍ୟମ କରାଯିବା ଆବଶ୍ୟକ । ସମସ୍ତଙ୍କ ମନରେ ଶିକ୍ଷା ସଚେତନତା ସୃଷ୍ଟି କରିବା ପାଇଁ କେବଳ ସରକାର ନୁହେଁ, ବିଶେଷ କରି ଗ୍ରାମାଞ୍ଚଳର ଶିକ୍ଷକବୃନ୍ଦ, ସ୍ୱେଚ୍ଛାସେବୀଗଣ ତଥା ଅନୁଷ୍ଠାନସମୂହ ଏବଂ ସର୍ବୋପରି ଶିକ୍ଷିତ ଜନସାଧାରଣଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ଜନଗଣନା ନିର୍ଦ୍ଦେଶାଳୟ
ଜନପଥ, ଭୁବନେଶ୍ୱର - ୨



# ଜନନାୟକ ନବକୃଷ୍ଣ ଚୌଧୁରୀ

ଶ୍ରୀ ବଳରାମ ମହାନ୍ତି

ସ୍ୱାଧୀନତା ସଂଗ୍ରାମୀ ଜନନାୟକ ନବକୃଷ୍ଣ ଚୌଧୁରୀ ୧୯୦୧ ମସିହା ନଭେମ୍ବର ମାସ ୨୩ ତାରିଖ ଦିନ କଟକ ସହରରେ ଜନ୍ମ ଗ୍ରହଣ କରିଥିଲେ । ସେ ଯେଉଁ ଘରେ ଜନ୍ମ ହୋଇଥିଲେ ତାହା ବର୍ତ୍ତମାନର ସ୍ୱରାଜ୍ୟ ଆଶ୍ରମ । ପିତାଙ୍କ ନାମ-ଗୋକୁଳାନନ୍ଦ ଚୌଧୁରୀ ଓ ମାତା-ପଦ୍ମାବତୀ ଦେବୀ । ଓଡ଼ିଶାର ବିଶିଷ୍ଟ ସର୍ବୋଦୟ ଓ ଗାନ୍ଧିବାଦୀ ନେତା ଗୋପବନ୍ଧୁ ଚୌଧୁରୀଙ୍କର ସେ ସାନ ଭାଇ । ପିତା ଗୋକୁଳାନନ୍ଦ ଚୌଧୁରୀ ସେତେବେଳର ଜଣେ ବିଶିଷ୍ଟ ଜମିଦାର ଓ ବିଖ୍ୟାତ ଆଇନଜୀବୀ ଥିଲେ । ପିଲାମାନେ ଘରେ ତାଙ୍କୁ ଜୁଆଁ ବୋଲି ଡାକୁଥିଲେ । ତାଙ୍କ ପିଲାମାନେ ତାଙ୍କୁ ବାପି ବୋଲି ଡାକିଲେ ମାତ୍ର ରାଜନୈତିକ କର୍ମୀ ଓ ସାଧାରଣ ଲୋକଙ୍କ ଭିତରେ ସେ ନବବାବୁ ନାମରେ ସୁପରିଚିତ । ସେ କଟକର ପିଆରିମୋହନ ଏକାଡେମୀରୁ ମାଟ୍ରିକୁଲେସନ ପାଶକରି ୧୯୧୮ ମସିହାରେ ରେଭେନ୍ସା କଲେଜରେ ନାମ ଲେଖାଇଥିଲେ । ସେ ପିଲାଦିନୁ ମେଧାବୀ ଛାତ୍ର ଥିଲେ ।

ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ବେଳେ ତାଙ୍କ ଭାଇ ଡେପୁଟି ମାଜିଷ୍ଟ୍ରେଟ୍ ଚାକିରିରେ ଥାଇ ମଧ୍ୟ କଟକର ବାଖରାବାଦଠାରେ ''ଭାରତୀ ମନ୍ଦିର'' ବୋଲି ଗୋଟିଏ ପାଠାଗାର ଓ ଆଲୋଚନା ଚକ୍ର ସ୍ଥାପନ କରିଥିଲେ । ଏଠାରେ ଭାରତର ବାହାରୁ ସମ୍ବାଦପତ୍ର ଓ ବହି ମଗାଇ ରଖୁଥିଲେ । ସେଠାକୁ ସେ କଲେଜ ଛାତ୍ରମାନେ ଯାଇ ଖବର କାଗଜ ଓ ବହି ପଢୁଥିଲେ । ଏହି ''ଭାରତୀ ମନ୍ଦିର''କୁ ଯୁବକ ନବକୃଷ୍ଣ ଚୌଧୁରୀ ରେଭେନ୍ସା କଲେଜ ଛାତ୍ର ଥିଲା ବେଳେ ନିୟମିତ ଭାବରେ ଯାଇ ପଢ଼ାପଢ଼ି କରୁଥିଲେ ଓ ସେଠାକୁ ଯାଉଥିବା ହରେକୃଷ୍ଣ ମହତାବ, ଭାଗୀରଥି ମହାପାତ୍ର, ରାଜକୃଷ୍ଣ ବୋଷ ପ୍ରମୁଖଙ୍କ ସଙ୍ଗେ ଦେଶର ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ଆଲୋଚନା କରୁଥିଲେ । ସେତେବେଳକୁ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡର ପ୍ରତିବାଦ କରାଯାଇ ରାଜନୈତିକ ପରିସ୍ଥିତି ସରଗରମ ହୋଇଥାଏ ଏବଂ ଗାନ୍ଧିଜୀ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ପାଇଁ ଦେଶବାସୀଙ୍କୁ ପ୍ରସ୍ତୁତ କରୁଥାନ୍ତି । ସେ ଆଗ୍ରହର ସହିତ ଦେଶର ରାଜନୈତିକ ପରିସ୍ଥିତି ଅନୁଧ୍ୟାନ କରୁଥାନ୍ତି ।

୧୯୨୧ ମସିହାରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହେଲା । ଏହି ସଂଗ୍ରାମକୁ ସଫଳ କରିବା ନିମନ୍ତେ ଅନ୍ୟାନ୍ୟ ପ୍ରତ୍ୟକ୍ଷ କାର୍ଯ୍ୟକ୍ରମ ଭିତରେ ସ୍କୁଲ କଲେଜ ବର୍ଜନ କରିବା ପାଇଁ ଗାନ୍ଧିଜୀ ଆହ୍ୱାନ ଦେଇଥିଲେ । ନବକୃଷ୍ଣ ଚୌଧୁରୀ ସେତେବେଳେ ରେଭେନ୍ସା କଲେଜର ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର । ଅନ୍ୟାନ୍ୟ କେତେକ ଛାତ୍ରଙ୍କ ସହିତ ସେ କଲେଜ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ପରେପରେ ତାଙ୍କଭାଇ ଗୋପବନ୍ଧୁ ଚୌଧୁରୀ ସେତେବେଳେ ଲୋଭନୀୟ ଡେପୁଟି ମାଜିଷ୍ଟ୍ରେଟ ଚାକିରି ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ । ଗୋପବନ୍ଧୁ ଚୌଧୁରୀ ଓ ଭାଗୀରଥି ମହାପାତ୍ର ମିଶି ସେହି ସମୟରେ ଜଗତ୍‌ସିଂହପୁର ନିକଟରେ ଅଳକାଶ୍ରମ ସ୍ଥାପନ କଲେ । ସେଠାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ସାଙ୍ଗେ ସାଙ୍ଗେ ସ୍ୱାଧୀନତା ସଂଗ୍ରାମୀ ବାନରସେନାଙ୍କୁ ଶିକ୍ଷା ଦିଆଯାଉଥିଲା । ନବକୃଷ୍ଣ ଚୌଧୁରୀ ଏହି ଅଳକାଶ୍ରମର ଜାତୀୟ ବିଦ୍ୟାଳୟରେ ଜଣେ ଶିକ୍ଷକ ଥିଲେ । ସେ ଗାଈଚା ବୁଣା ଶିକ୍ଷା କରିବା ପାଇଁ ଗାନ୍ଧିଜୀଙ୍କ ସାବରମତୀ ଆଶ୍ରମକୁ ଯାଇଥିଲେ । ସେ ପିଲାଦିନୁ ଆୟସରେ ବଢ଼ିଥିଲେ । ଧନୀ ଓ ଜମିଦାର ଘର ପିଲା ହୋଇ ଥିବାରୁ ତାଙ୍କର କୌଣସି ଅଭାବ ନଥିଲା ! ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାପରେ ସେ ସମସ୍ତ ବିଳାସ ବ୍ୟସନ ଛାଡ଼ି ସରଳ ଓ ନିରାଡ଼ମ୍ବର ଜୀବନଯାପନ କରିବା ପାଇଁ ଅଭ୍ୟାସ କରିଥିଲେ ।

୧୯୨୨ ମସିହାରେ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ସାମୟିକ ଭାବରେ ବନ୍ଦ କରିଦେଲେ । ଏହି ସମୟରେ ସେ ଗାନ୍ଧିଜୀଙ୍କ ସାବରମତୀ ଆଶ୍ରମକୁ ଯାଇ କିଛିଦିନ ରହିଥିଲେ ଓ ସେଠାରେ ସ୍ୱାଧୀନତା ସଂଗ୍ରାମୀମାନେ କିପରି ତାଲିମ ପାଉଛନ୍ତି ତାହା ଅନୁଧ୍ୟାନ କରିଥିଲେ । ଗାନ୍ଧିଜୀ ଯାହା କହୁଛନ୍ତି ତାହା ସେ ଅନ୍ୟମାନଙ୍କ ସାଙ୍ଗରେ ମିଶି କିପରି କରୁଛନ୍ତି ତାହା ସେ ଲକ୍ଷ୍ୟ କରିଥିଲେ । ସେଠାରୁ ଯାଇ ସେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଦ୍ୱାରା ପ୍ରତିଷ୍ଠିତ ଶାନ୍ତିନିକେତନରେ ଛମାସ ପର୍ଯ୍ୟନ୍ତ ରହିଥିଲେ ଓ ସେଠାରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷା ଭିତରେ ସମନ୍ୱୟ ସ୍ଥାପନ କରି କିପରି ଶିକ୍ଷା ଦିଆଯାଉଛି ଓ ନୂତନ ଢଙ୍ଗରେ ଗ୍ରାମ ସଂଗଠନ କରାଯାଉଛି ତାହା ସେ ଅଧ୍ୟୟନ କରିଥିଲେ ।

ଶାନ୍ତିନିକେତନଠାରେ ଯୁବକ ନବକୃଷ୍ଣ ଚୌଧୁରୀଙ୍କର ଶ୍ରୀମତୀ ମାଳତୀ ଦେବୀଙ୍କ ସହିତ ଦେଖା ହୋଇଥିଲା । ୧୯୨୭ ମସିହାରେ

ସେମାନଙ୍କ ବିବାହ ହେଲା । ସେ ଅନ୍ୟ ଜାତିରେ ବିବାହ କରିଥିବାରୁ ତାଙ୍କ ପରିବାର ଓ ଆତ୍ମୀୟଙ୍କ ଭିତରୁ ଅନେକ ତାର ବିରୋଧ କରିଥିଲେ । ମାତ୍ର ନବବାବୁ ଗାନ୍ଧିଜୀଙ୍କ ଆଦର୍ଶରେ ବିଶ୍ୱାସ କରୁଥିବାରୁ ନିଜ ବିବାହକୁ ନିଜ ଜାତି, ଧର୍ମ ବା ବର୍ଣ୍ଣ ଭିତରେ ସୀମାବଦ୍ଧ କରି ରଖିବାକୁ ଚାହିଁ ନଥିଲେ । ତାଛଡ଼ା ସେ ତାଙ୍କ ସହଧର୍ମିଣୀଙ୍କୁ ସହକର୍ମୀ ରୂପେ ପାଇବାକୁ ଚାହିଁଥିଲେ । ତେଣୁ ସେ ଶ୍ରୀମତୀ ମାଳତୀ ଦେବୀଙ୍କ ଭଳି ଜଣେ ସ୍ୱଦେଶପ୍ରେମୀ, କର୍ତ୍ତବ୍ୟନିଷ୍ଠ ଶିକ୍ଷିତା ନାରୀଙ୍କୁ ସହଧର୍ମିଣୀ ରୂପେ ପାଇ ସନ୍ତୋଷ ଲାଭ କରିଥିଲେ । ବିବାହ ପରେ ଶ୍ରୀମତୀ ମାଳତୀ ଦେବୀଙ୍କ ସହିତ ସେ ଓଡ଼ିଶା ଫେରିଆସି ତାଙ୍କ ପୈତୃକ ଗ୍ରାମ ନିକଟ ଖେରସଠାରେ ଏକ କୃଷି ଫାର୍ମ କରି ସେଠାରେ ନିଜେ ଚାଷ କରିଥିଲେ । ସେଠାରେ ଉନ୍ନତ ଧରଣର ଧାନ ତଥା ପନିପରିବା ଚାଷକରି ଆଖପାଖ ଗାଁର ଲୋକଙ୍କୁ ଶିଖାଉଥିଲେ । ତାସହିତ ସେ ଓ ଶ୍ରୀମତୀ ମାଳତୀ ଦେବୀ ପଡ଼ୋଶୀ ଗାଁମାନଙ୍କୁ ଯାଇ ଖଦୀ ବିକ୍ରି କରୁଥିଲେ ଓ କଂଗ୍ରେସ ବାର୍ତ୍ତା ପ୍ରଚାର କରୁଥିଲେ । ଲବଣ ସତ୍ୟାଗ୍ରହ ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ ।

୧୯୩୦ ମସିହା ମଧ୍ୟଭାଗରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟରେ ଲବଣ ସତ୍ୟାଗ୍ରହ ଚାଲିଲା । ଓଡ଼ିଶାର ବାଲେଶ୍ୱର ଉପକୂଳ ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ହୋଇଥିଲା । ଯୁବସଂଗ୍ରାମୀ ନବକୃଷ୍ଣ ଚୌଧୁରୀ ସେଥିରେ ଯୋଗ ଦେଇଥିଲେ । ବର୍ଷାହେଲାବେଳେ ସେଠାରେ ଲୁଣମରା ବନ୍ଦଥିଲା । ସେତେବେଳେ ଇଞ୍ଚୁଡ଼ି ନିକଟବର୍ତ୍ତୀ ଶ୍ରୀଜଙ୍ଗଠାରେ ତାଙ୍କ ନେତୃତ୍ୱରେ ଚୌକିଦାରୀ ଟିକସବନ୍ଦ ଆନ୍ଦୋଳନ ଚାଲିଥିଲା । ଦଫାଦାର ଓ ଚଉକିଦାର ମାନଙ୍କୁ ଚାକିରି ଛାଡ଼ି ଦେବା ପାଇଁ ସେ ବୁଝାଉଥିଲେ ଓ ବହୁ ଦଫାଦାର ଓ ଚଉକିଦାର ସେତେବେଳେ ଚାକିରି ଛାଡ଼ି ଦେଇଥିଲେ । ସରକାର ଆତଙ୍କିତ ହୋଇ ନବବାବୁଙ୍କୁ ଗିରଫକରି ନେଇଥିଲେ । ନବବାବୁ କଟକ ଜେଲରେ ଥିଲାବେଳେ ପଢ଼ାଛାଡ଼ି ଆସିଥିବା ରାଜବନ୍ଦୀମାନଙ୍କୁ ପାଠ ପଢ଼ାଉଥିଲେ ଓ ଖେଳ କୌତୁକରେ ମଜାଇ ରଖୁଥିଲେ ।

୧୯୩୧ ମସିହାରେ ଗାନ୍ଧି-ଇରଉଇନ ଚୁକ୍ତି ଫଳରେ ଅନ୍ୟ ରାଜବନ୍ଦୀଙ୍କ ସହିତ ସେ ଖଲାସ ହେଲେ । ୧୯୩୨ ମସିହାରେ ପୁରୀ ଠାରେ ନିଖିଳଭାରତ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେବା ନିଶ୍ଚିତ ହୋଇଥିଲା । ସେଥିପାଇଁ ଓଡ଼ିଶା କଂଗ୍ରେସ ଅନୁଷ୍ଠାନ ପକ୍ଷରୁ ବ୍ୟାପକ ଆୟୋଜନ ଚାଲିଲା । ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀ ଅଧିବେଶନ ପାଇଁ ସ୍ୱେଚ୍ଛାସେବକମାନଙ୍କୁ ତାଲିମ ଦେବାର ଦାୟିତ୍ୱ ଗ୍ରହଣ କରିଥିଲେ । ଏହିପରି ଆୟୋଜନ ଚାଲୁଥିବା ବେଳେ ବ୍ରିଟିଶ ସରକାର ପୁଣି ଦମନଲୀଳା ଚଳେଇଲେ । ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଲା । ଏଥିରେ ନବବାବୁ ଗିରଫ ହୋଇ ହଜାରୀବାଗ ଜେଲରେ ରହିଥିଲେ । ଏହି ଜେଲରେ ରହିଥିଲା ବେଳେ ସେ ରୁଷ ବିପ୍ଳବର ଇତିହାସ ତଥା କମ୍ୟୁନିଜମ ଓ ମାର୍କ୍ସବାଦ ସଂପର୍କରେ ବିସ୍ତୃତ ଭାବରେ ଅଧ୍ୟୟନ କରିଥିଲେ । ଭାରତ ତଥା ଓଡ଼ିଶା ଭୂସ୍ୱତ୍ୱ ଓ ରାଜସ୍ୱ ପଦ୍ଧତି ସଂପର୍କରେ ମଧ୍ୟ ଅଧ୍ୟୟନ କରିଥିଲେ । ସେତିକି ବେଳେ ସେ ଉପଲବ୍ଧି କରିଥିଲେ ଯେ, କୃଷକଙ୍କ ସମସ୍ୟାର ସମାଧାନ ପାଇଁ ସ୍ୱତନ୍ତ୍ର ଭାବରେ ଆନ୍ଦୋଳନ ଚଳେଇବା ଏକାନ୍ତ ଆବଶ୍ୟକ ।

୧୯୩୩ ମସିହାରେ ଅନ୍ୟ ରାଜବନ୍ଦୀଙ୍କ ସହିତ ନବବାବୁ ଜେଲରୁ ଖଲାସ ହୋଇ ଆସିବା ପରେ ଓଡ଼ିଶାର କେତେକ ପ୍ରଗତିବାଦୀ କଂଗ୍ରେସ କର୍ମୀଙ୍କ ସହିତ ପରାମର୍ଶ କରି କଂଗ୍ରେସ ସାମ୍ୟବାଦ ଦଳ ଗଠନ କରିଥିଲେ । ଏଥିରେ ଶ୍ରୀମତୀ ମାଳତୀ ଦେବୀ, ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ ଓ ପ୍ରାଣନାଥ ପଟ୍ଟନାୟକ ପ୍ରମୁଖ ମୁଖ୍ୟ ସଂଗ୍ରାମୀ ଥିଲେ । ସମଗ୍ର ଦେଶରେ ଏହାଥିଲା ସମାଜବାଦୀ ଚିନ୍ତାଧାରାର ପ୍ରସାର ପାଇଁ ପ୍ରଥମ ଉଦ୍ୟମ । ସମଗ୍ର ଦେଶରେ ସମାଜବାଦୀ ଚିନ୍ତାଧାରାର ପ୍ରସାର ପାଇଁ ପ୍ରଥମେ ଯେଉଁ ପ୍ରଗତିବାଦୀ ନେତୃବର୍ଗ ଚିନ୍ତା କରିଥିଲେ ସେମାନଙ୍କ ଭିତରେ ନବକୃଷ୍ଣ ଚୌଧୁରୀ ଥିଲେ ଅନ୍ୟତମ ।ଅନ୍ୟମାନଙ୍କ ଭିତରେ ଜୟ ପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲି ପ୍ରମୁଖଙ୍କ ସହିତ ନବକୃଷ୍ଣ ଚୌଧୁରୀ କଂଗ୍ରେସ ସୋସାଲିଷ୍ଟ ଦଳ ଗଠନ କରିଥିଲେ । ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାର କଂଗ୍ରେସ ସାମ୍ୟବାଦୀ ଦଳର କର୍ମୀମାନେ ହିଁ କୃଷକ ଆନ୍ଦୋଳନ ଓ ପୂର୍ବତନ ଗଡ଼ଜାତରେ ପ୍ରଜାମଣ୍ଡଳ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

ଜନନାୟକ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀ ତାଙ୍କର ଅନ୍ୟ ସମାଜବାଦୀ କର୍ମୀମାନଙ୍କ ସହଯୋଗରେ ୧୯୩୪ ମସିହା ଠାରୁ କୃଷକ ଆନ୍ଦୋଳନ ଚଳେଇ ଥିଲେ । ସେତେବେଳେ କୃଷକମାନେ ସର୍ବାପେକ୍ଷା ଅଧିକ ଅବହେଳିତ ଓ ଶୋଷିତ ଅବସ୍ଥାରେ ଥିଲେ । ନିଜର ଗଛମାଛରେ ତାଙ୍କର ଅଧିକାର ନଥିଲା । ନିଜ ଜମି ସେମାନେ ବିକ୍ରି କରି ପାରୁନଥିଲେ । ଦାଖଲ ଖାରଜ ରୋସମ ଦେବାକୁ ପଡୁଥିଲା । ସମଗ୍ର ରାଜ୍ୟବାସୀଙ୍କ ପାଇଁ କୃଷକମାନେ ଖାଦ୍ୟଶସ୍ୟ ଉତ୍ପାଦନ କରୁଥିଲେ ଅଥଚ ସେମାନେ ଅତି ଦୀନହୀନ ଅବସ୍ଥାରେ ରହିଥିଲେ । ଗାଁ ଦାଣ୍ଡ ପିଣ୍ଡାରେ ଜମିଦାର ବା ମହନ୍ତ ବସିଥିଲେ କୃଷକମାନେ ସେବାଟେ ଜୋତାମାଡ଼ି ବା ଛତା ଧରି ଯାଇ ପାରୁ ନଥିଲେ । ଲମ୍ବହୋଇ ସେମାନଙ୍କ ଗୋଡ଼ ତଳେ ପଡୁଥିଲେ । ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଫଳରେ କୃଷକମାନେ ଆତ୍ମସମ୍ମାନ ଫେରି ପାଇଲେ ଓ ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ଓଡ଼ିଶାରେ ନୂତନ ମନ୍ତ୍ରିମଣ୍ଡଳ ଗଢ଼ା ହେଲା । ସେହି ବିଧାନ ସଭାକୁ ନବବାବୁ ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ବିଧାନ ସଭାରେ ତାଙ୍କର ଦୃଢ଼ ଦାବୀ ଫଳରେ କୃଷକମାନଙ୍କର ସର୍ବନିମ୍ନ ଦାବୀମାନ ପୂରଣ ହୋଇଥିଲା । ବିହାର-ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ କରାଯାଇ କୃଷକମାନଙ୍କର ଦାବୀ ପୂରଣ କରାଯାଇଥିଲା ।

ସେତେବେଳେ ଓଡ଼ିଶାର ଉପକୂଳ ଜିଲ୍ଲାର କୃଷକମାନଙ୍କ ପରି ଓଡ଼ିଶାଠାରୁ ଅଲଗାଥିବା ପୂର୍ବତନ ଗଡ଼ଜାତର ପ୍ରଜାମାନେ ଅବହେଳିତ, ଶୋଷିତ ଓ ଦୀନହୀନ ଅବସ୍ଥାରେ ଥିଲେ । ସେମାନଙ୍କ ଉପରେ ନାନା ପ୍ରକାର ବେଆଇନ କର, ଟିକସ ଧାର୍ଯ୍ୟ କରାଯାଉଥିଲା ଓ ନାନା ଜୁଲମ ଓ ଅତ୍ୟାଚାର କରାଯାଉଥିଲା । ଢେଙ୍କାନାଳ, ତାଳଚେର, ରଣପୁର ଓ ନୀଳଗିରି ପ୍ରଭୃତି ରାଜ୍ୟରେ ଅତ୍ୟାଚାରର ସୀମା ଟପି ଯାଇଥିଲା । ଓଡ଼ିଶରେ କଂଗ୍ରେସ ଶାସନ ଚାଲିବାପରେ ଗଡ଼ଜାତର ପ୍ରଜାମାନେ ଏହିସବୁ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ଚଳେଇବା ପାଇଁ ସେତେବେଳେ

ଉତ୍ସାହିତ ହେଲେ । ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ତାଙ୍କର ସମାଜବାଦୀ ସହଯୋଗୀ ପ୍ରଜା ମଣ୍ଡଳ ଆନ୍ଦୋଳନ ଆରମ୍ଭ ହୋଇଥିଲା । ନିଜେ ନବବାବୁ ବିଧାନସଭାରୁ ଇସ୍ତଫା ଦେଇ ପ୍ରଥମେ ଦଳେ କର୍ମୀଙ୍କ ସହ ଢେଙ୍କାନାଳରେ ପଶିଥିଲେ । ଏହି ସମୟରେ ତାଳଚେର ରାଜାଙ୍କ ଦ୍ୱାରା ଅତ୍ୟାଚାରିତ ୩୦ ହଜାରରୁ ଅଧିକ ଲୋକ ତାଙ୍କ ଘରଦ୍ୱାର ଛାଡ଼ି ଅନୁଗୁଳ ଭିତରକୁ ପଳାଇ ଆସି ଆଶ୍ରୟ ନେଇଥିଲେ । ଶ୍ରୀମତୀ ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀ ଏହି ନିରାଶ୍ରୟ ଲୋକଙ୍କ ଥଇଥାନ ପାଇଁ ଅବିଶ୍ରାନ୍ତ କାର୍ଯ୍ୟ କରିଥିଲେ ।

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବା ପରେ ପ୍ରାଦେଶିକ କଂଗ୍ରେସର ନେତୃତ୍ୱ ପରିବର୍ତ୍ତନ ହେଲା ଏବଂ ନବକୃଷ୍ଣ ଚୌଧୁରୀ ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ ନିର୍ବାଚିତ ହେଲେ । ଯୁଦ୍ଧ ଘନେଇ ଆସିବା ବେଳେ ପୂର୍ବ ଉପକୂଳରେ ଆକ୍ରମଣର ଆଶଙ୍କା କରି ବ୍ରିଟିଶ ସରକାର ଭୀତତ୍ରସ୍ତ ହୋଇ ଯେପରି କାର୍ଯ୍ୟ କଲେ ଲୋକେ ଅଧିକ ଆତଙ୍କିତ ହୋଇ ପଡ଼ିଲେ । ସେତେବେଳେ ଦଳେ ବିଶ୍ୱସ୍ତ କର୍ମୀଙ୍କ ସହ ଜନନାୟକ ନବକୃଷ୍ଣ ଚୌଧୁରୀ ଲୋକଙ୍କୁ ସାହସ ଦେଇଥିଲେ । ଏହି ସମୟରେ କଂଗ୍ରେସ ପକ୍ଷରୁ ଯେଉଁ ଯୁଦ୍ଧ ବିରୋଧୀ ବ୍ୟକ୍ତିଗତ ବା ବାଣୀ ସତ୍ୟାଗ୍ରହ ଆରମ୍ଭ ହେଲା ସେଥିରେ ଯୋଗଦେଇ ସେ କାରାବରଣ କଲେ ଓ ଶେଷରେ ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ଗିରଫ ହୋଇ ଅଟକ ବନ୍ଦୀ ହୋଇ ତିନି ବର୍ଷରୁ ଉର୍ଦ୍ଧ୍ୱକାଳ ରହିଥିଲେ । ବ୍ରହ୍ମପୁର ଜେଲ ଭିତରେ ସେ ଅନ୍ୟାନ୍ୟ ରୂପେ ବନ୍ଦୀମାନଙ୍କୁ ନିୟମିତ ଭାବରେ ରାଜସ୍ୱ ପଦ୍ଧତି ଓ ପ୍ରଜାସ୍ୱତ୍ୱ ଆଇନକୁ ବୁଝାଉଥିଲେ ।

୧୯୪୫ ମସିହାରେ ଅନ୍ୟାନ୍ୟ ରାଜବନ୍ଦୀଙ୍କ ସହିତ ସେ ଜେଲରୁ ଖଲାସ ହେଲେ ଏବଂ ୧୯୪୬ ରେ ନିର୍ବାଚନ ହୋଇ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା ବେଳେ ନବବାବୁ ଏହି ମନ୍ତ୍ରିମଣ୍ଡଳରେ ରାଜସ୍ୱ, ଯୋଗାଣ ଓ ପରିବହନ ବିଭାଗ ମନ୍ତ୍ରୀରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ଓଡ଼ିଶାର ପରିବହନ ବ୍ୟବସ୍ଥାକୁ ସେ ଜାତୀୟକରଣ କରିଥିଲେ ଏବଂ ଏହା ଥିଲା ଭାରତରେ ପ୍ରଥମ । ଯୋଗାଣ ବିଭାଗର ପୁନର୍ଗଠନକରି ଲୋକେ ଯେପରି କଣ୍ଟ୍ରୋଲ ଜିନିଷ ସୁବିଧାରେ ପାଇବେ ସେଥିପାଇଁ ସେ ସ୍ଥାନୀୟ ପ୍ରତିନିଧିଙ୍କୁ ନେଇ କମିଟିମାନ ଗଠନ କରିଥିଲେ । ସେ ଓଡ଼ିଶାର ପ୍ରଥମ ଗ୍ରାମ ପଞ୍ଚାୟତ ଆଇନ ପ୍ରଣୟନ କରାଇଥିଲେ । ଏଥିରେ ଗ୍ରାମମାନଙ୍କର ଗ୍ରାମାଞ୍ଚଳର ଛୋଟଛୋଟ ବିବାଦର ବିଚାର ପାଇଁ ପଞ୍ଚାୟତମାନଙ୍କର କ୍ଷମତା ଥିଲା । ଓଡ଼ିଶାର ଜମିଦାରୀ ଉଚ୍ଛେଦ ନିମନ୍ତେ ସୁପାରିଶ କରିବା ପାଇଁ ତାଙ୍କ ଅଧ୍ୟକ୍ଷତାରେ ଓଡ଼ିଶା ଭୂସ୍ୱତ୍ୱ ଓ ଜମିଜମା କମିଟି ଗଠିତ ହୋଇଥିଲା । ୧୯୪୮ ମସିହାରେ ତାଙ୍କର ପୁତ୍ରଙ୍କର ଅକାଳ ବିୟୋଗରେ ମର୍ମାହତ ହୋଇ ନବବାବୁ ମନ୍ତ୍ରିମଣ୍ଡଳ ତଥା ବିଧାନସଭା ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ ।

୧୯୪୯-୫୦ ମସିହାରେ ନବବାବୁ ଶାସନକାର୍ଯ୍ୟରୁ ଅବ୍ୟାହତି ନେଇ ରହିଥିବା ବେଳେ ରାଜ୍ୟ ସରକାରଙ୍କ ମୌଳିକ ଶିକ୍ଷା ଅଫିସର ରୂପେ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧ କ୍ରମେ କାର୍ଯ୍ୟ କରିଥିଲେ । ସେ ରାଜ୍ୟର ରାଜସ୍ୱମନ୍ତ୍ରୀ ହେବାପରେ ପୁଣି କିପରି ସରକାରଙ୍କ ଅଧୀନରେ ଜଣେ ଅଫିସର ରୂପେ କାର୍ଯ୍ୟ କରିବାକୁ ରାଜିହେଲେ, ସେ ସଂପର୍କରେ ଏକ ସ୍ପଷ୍ଟୀକରଣ ଦେଇ ସେତେବେଳେ ସେ କହିଥିଲେ ଯେ ସ୍ୱାଧୀନତା ସଂଗ୍ରାମୀମାନେ ସରକାରୀ କର୍ମଚାରୀଙ୍କୁ ସମାଲୋଚନା କରି କହୁଥିଲେ ଯେ ସେମାନଙ୍କର ଲୋକଙ୍କ ସହିତ ସଂପର୍କ ନାହିଁ ।ଲୋକଙ୍କ ଅଭାବ ଅସୁବିଧା ବା ଆଶା ଓ ଆକାଂକ୍ଷା ସେମାନେ ବୁଝନ୍ତି ନାହିଁ ତେଣୁ ଯେଉଁ ସ୍ୱାଧୀନତା ସଂଗ୍ରାମୀଙ୍କର ଶାସନ ପରିଚାଳନା କରିବା ଭଳି ଯୋଗ୍ୟତା ରହିଛି, ସେମାନେ ସରକାରୀ କର୍ମଚାରୀ ଭାବରେ ଶାସନ କାର୍ଯ୍ୟରେ ସହଯୋଗ କରିବା ଆବଶ୍ୟକ ।

୧୯୫୦ ମସିହା ପ୍ରଥମ ଭାଗରେ ସେତେବେଳର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ପରାମର୍ଶକ୍ରମେ ଜନନାୟକ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଏହି ସମୟରେ ତାଙ୍କ ଅଧ୍ୟକ୍ଷତାରେ ଗଠିତ ଜମିଜମା କମିଟି ସୁପାରିଶ ଅନୁସାରେ ଓଡ଼ିଶାରୁ ଜମିଦାରୀ ଉଚ୍ଛେଦ ହୋଇଥିଲା । ଜମିଦାରମାନଙ୍କୁ କ୍ଷତି ପୂରଣ ଦିଆଯାଇ ଥିଲା । ବଡ଼ବଡ଼ ଜମି ମାଲିକମାନେ ଯେପରି ଭାଗଚାଷୀ ମାନଙ୍କୁ ଜମିରୁ ଉଚ୍ଛେଦ କରି ନପାରିବେ ସେଥିପାଇଁ ସେ ଭାଗଚାଷ ଆଇନ ପ୍ରଣୟନ କରାଇଥିଲେ । ପଞ୍ଚାୟତ ସ୍ତରରେ ଶାସନ କ୍ଷମତା ବିଭାଜନ ପାଇଁ ସେ ''ଅଞ୍ଚଳ ଶାସନ'' ଆଇନ ପ୍ରଣୟନ କରାଇଥିଲେ ଏବଂ ଗ୍ରାମ ପଞ୍ଚାୟତ ଆଇନକୁ କାର୍ଯ୍ୟକାରୀ କରାଇଥିଲେ । ଶାସନର ସର୍ବୋଚ୍ଚ ସ୍ତରରେ ଓଡ଼ିଆ ଭାଷା ପ୍ରଚଳନ କରିବା ପାଇଁ ସେ ସମସ୍ତ ପ୍ରାଥମିକ ବ୍ୟବସ୍ଥା କରି ଯାଇଥିଲେ । ୧୯୫୬ ମସିହା ଶେଷ ଭାଗରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଚାଲିଯାଇଥିଲେ । ସେ ଭୂଦାନ ପଦଯାତ୍ରା ପାଇଁ ବିନୋବାଜୀଙ୍କୁ ସ୍ୱାଗତକରି ତାଙ୍କ ସହିତ କିଛିଦିନ ପଦଯାତ୍ରା କରିଥିଲେ । ତାପରେ ସେ ସର୍ବୋଦୟ ସଂଘର ସଭାପତି ଭାବରେ ସମଗ୍ର ଦେଶରେ ବୁଲିଥିଲେ ଓ ଜନଜାଗରଣରେ ସହଯୋଗ କରିଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ କେବଳ ଆଇନ କରିଦେଲେ ଲୋକେ ଉପକୃତ ହେବେ ନାହିଁ, ତାକୁ କାର୍ଯ୍ୟକାରୀ କରିବାକୁ ଜନଜାଗରଣ ଦରକାର ।

୧୯୭୫ ମସିହାରେ ଜରୁରୀ କାଳୀନ ଅବସ୍ଥା ଜାରି କରାଯିବାପରେ ତା ବିରୁଦ୍ଧରେ ଯେଉଁ ଜନଜାଗରଣ ହୋଇଥିଲା, ଜନନାୟକ ନବକୃଷ୍ଣ ଚୌଧୁରୀ ଓଡ଼ିଶାରେ ତାର ନେତୃତ୍ୱ ନେଇ କାରାବରଣ କରିଥିଲେ । ଏହି ସମୟରେ ସେ ବାରିପଦା ଜେଲରେ ଥିଲାବେଳେ ଅସୁସ୍ଥ ହୋଇ ପଡ଼ିଲେ । ପକ୍ଷାଘାତ ରୋଗରେ ଆକ୍ରାନ୍ତ ହେଲେ । ଖଲାସ ହେବାପରେ ସେହି ଅବସ୍ଥାରେ ମଧ୍ୟ ନିର୍ବାଚନ ବେଳେ ସକ୍ରିୟ ହୋଇଥିଲେ । ୧୯୮୪ ମସିହା ଜୁନ ୨୪ ତାରିଖ ଦିନ ସେ ଓଡ଼ିଶାବାସୀଙ୍କୁ ଛାଡ଼ି ଚାଲିଗଲେ । ଜନନାୟକ ନବକୃଷ୍ଣ ଚୌଧୁରୀଙ୍କ ଭଳି ତ୍ୟାଗୀ, ଦେଶପ୍ରେମୀ, ଅବହେଳିତ ଓ ଶୋଷିତ ଜନଗଣଙ୍କ ବନ୍ଧୁ ଓ ମୌଳିକ ବୁଦ୍ଧି ସମ୍ପନ୍ନ ବ୍ୟକ୍ତି ସମଗ୍ର ଦେଶରେ ବିରଳ । ଓଡ଼ିଶା ଇତିହାସରେ ସେ ଅମର ହୋଇ ରହିବେ ।

୧୧୩, ବାପୁଜୀ ନଗର, ଭୁବନେଶ୍ୱର - ୯

# ଦାରିଦ୍ର୍ୟ ଓ ଅର୍ଥ ଶାସ୍ତ୍ରର ଦ୍ୱୈତବାଦ ତତ୍ତ୍ୱ

ପ୍ରାଧ୍ୟାପକ ଡ଼ଃ ସତ୍ୟନାରାୟଣ ଦାଶ

ଅର୍ଥଶାସ୍ତ୍ରରେ ଦ୍ୱୈତବାଦର ସଂଜ୍ଞା ଯଦି ଆମେ ଉନ୍ନତର ତଥା ଅତ୍ୟାଧୁନିକ ଏକ କ୍ଷେତ୍ର ସହିତ ପୁରାତନ, ଗତାନୁଗତିକ, ପଛୁଆ ଅନ୍ୟ ଏକ କ୍ଷେତ୍ରର ସହାବସ୍ଥାନ ରୂପେ ନିରୂପଣ କରୁ, ଯାହାକି ଭାରତୀୟ ଅର୍ଥନୀତିର ଏକ ଜ୍ୱଳନ୍ତ ପ୍ରତୀକ ରୂପେ ବିଦ୍ୟମାନ ହସ୍ତତନ୍ତ ଓ କଳତନ୍ତ ସଦୃଶ, ତାହାହେଲେ ଆମେ ଏକ ଦ୍ୱୈତ ବାଦର ସଂଗଠନ ଭାରତୀୟ ଅର୍ଥ ବ୍ୟବସ୍ଥାରେ ପାଉଁ ଯେଉଁ ଠାରେ କି ଗତାନୁଗତିକ, ପୁରାତନ କ୍ଷେତ୍ର ନିଜର ଏକ ସ୍ୱତନ୍ତ୍ର ସ୍ଥାନରେ ସୁରକ୍ଷିତ ରହିବା ସଙ୍ଗେ ସଙ୍ଗେ ଅତ୍ୟାଧୁନିକ କ୍ଷେତ୍ରର ମୂଳ ତତ୍ତ୍ୱକୁ ମଧ୍ୟ ଉପେକ୍ଷା କରି ପାରିଛି । ଏହି ନୂତନ ଅତ୍ୟାଧୁନିକ କ୍ଷେତ୍ର, ହଜାର, ହଜାର ବର୍ଷର ଐତିହାସିକ ଭିତ୍ତିଭୂମିରେ ଦୃଢ଼ୀଭୂତ ଭାରତୀୟ ସଭ୍ୟତାର ବିବିଧ ଅର୍ଥନୈତିକ ବୈଶିଷ୍ଟ୍ୟକୁ ଅପସାରଣ କରିପାରୁ ନାହିଁ କି ମିଳନ ପ୍ରକ୍ରିୟାକୁ ମଧ୍ୟ ତ୍ୱରାନ୍ୱିତ ମଧ୍ୟ କରିପାରୁ ନାହିଁ । କାରଣ ଏହା ଦେଶର ବୌଦ୍ଧିକ ଓ ଯାନ୍ତ୍ରିକ ବିକାଶ ପ୍ରକ୍ରିୟାରୁ ଉଦ୍‌ଭବ ନହୋଇ ବିଦେଶରୁ ଆମଦାନୀ କରାଯାଇଛି । ଫଳତଃ, କୌଣସି ଏକ କ୍ଷେତ୍ର ସର୍ବସାଧାରଣରେ ସମୂହ ରୂପେ ଆଦରଣୀୟ ହୋଇପାରୁ ନାହିଁ । ଏତାଦୃଶ୍ୟ ଦ୍ୱୈତ ତଥା ବିବିଧ ଅର୍ଥନୈତିକ ସଂଗଠନର ନିରବଚ୍ଛିନ୍ନ ପ୍ରତିଷ୍ଠାକୁ କେଉଁ ରୂପେ ବ୍ୟାଖ୍ୟା କରାଯାଇ ପାରିବ ତାହା ଅର୍ଥଶାସ୍ତ୍ରୀମାନଙ୍କ ତାତ୍ତ୍ୱିକ ଆଲୋଚନା ପରିସରକୁ ଆସିଥିଲେ ହେଁ, ସର୍ବସାଧାରଣରେ ଗ୍ରହଣୀୟ ହୋଇପାରିନାହିଁ ।

ଅର୍ଥଶାସ୍ତ୍ରର ଏହି ଦ୍ୱୈତବାଦର ଏକ ତାତ୍ତ୍ୱିକ ତଥା ସ୍ୱତନ୍ତ୍ର ବ୍ୟାଖ୍ୟା ଏହି ପ୍ରବନ୍ଧରେ ଉପସ୍ଥାପନ କରାଯାଇଛି ଯାହାକି ଆମ ପ୍ରଦେଶର ପଶ୍ଚିମାଞ୍ଚଳସ୍ଥିତ ହସ୍ତତନ୍ତ ଶିଳ୍ପର ଏକ ବ୍ୟକ୍ତିଗତ ଅନୁଧ୍ୟାନରୁ ଗ୍ରହଣ କରାଯାଇଛି । ଉକ୍ତ ପର୍ଯ୍ୟବେକ୍ଷଣକୁ ନୂଆଦିଲ୍ଲୀସ୍ଥିତ ମିତଲ ପ୍ରକାଶନ ''ଭାରତର ହସ୍ତତନ୍ତ ଶିଳ୍ପ'' ଶିରୋନାମାରେ ୧୯୯୫ ମସିହାରେ ପ୍ରକାଶ କରିଛନ୍ତି । ଉକ୍ତ ପୁସ୍ତକ ପ୍ରାବନ୍ଧିକଙ୍କ ଦ୍ୱାରା ରଚିତ ହୋଇଛି ।

ଉକ୍ତ ପର୍ଯ୍ୟବେକ୍ଷଣରୁ ସୂଚିତ ହୁଏ ଯେ ହସ୍ତତନ୍ତ ଶିଳ୍ପ ଏକ ଜାତିଗତ ବ୍ୟବସାୟ । ଅନେକ ଜାତି ହସ୍ତତନ୍ତ ବସ୍ତ୍ର ଉତ୍ପାଦନରେ ବ୍ୟାପୃତ ଓ ପ୍ରତ୍ୟେକ ଜାତି ଏକ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର କଳା କୌଶଳରେ ସିଦ୍ଧହସ୍ତ ଓ ପ୍ରତ୍ୟେକ ଏକ ନିର୍ଦ୍ଦିଷ୍ଟ କିସମର ବସ୍ତ୍ର ଉତ୍ପାଦନ କରି ଜୀବିକା ନିର୍ବାହ କରନ୍ତି ।

ଏହି ଜାତିଗତ ହସ୍ତତନ୍ତ ଶିଳ୍ପ ଦୁଇଟି ଦିଗରୁ ତିଷ୍ଠି ରହିଛି । ଗୋଟିଏ ଭାଗରେ ଅନେକ ଧନୀ ତଥା ସ୍ୱଚ୍ଛଳ ଜାତି କର୍ମାଭିମୁଖୀ ଯେଉଁମାନେ କି ଉନ୍ନତ ଓ ସୂକ୍ଷ୍ମ ବସ୍ତ୍ର ବୟନ କରିଥାନ୍ତି ଯଥା ଭୁଲିଆ ଓ କୁଷ୍ଟା । ଏସବୁ ବସ୍ତ୍ରର ଗ୍ରାହକ ମୁଖ୍ୟତଃ ଧନୀ ଓ ମଧ୍ୟବିତ୍ତ ପରିବାର ବର୍ଗ ଅଟନ୍ତି । ସମାଜର ଏହି ଉଚ୍ଚ ଶ୍ରେଣୀର ଉପଭୋକ୍ତା ମାନଙ୍କର ସମ୍ଭୋଗ ପ୍ରତିରୂପର ଏକ ବିଶିଷ୍ଟ ଦିଗ ହେଲା ଯେ ଏମାନେ ପୁରାତନ ପରମ୍ପରାର ଏକ ମୁଖ୍ୟ ପୃଷ୍ଠପୋଷକ ହେଲେ ହେଁ ଆଧୁନିକ ଚିନ୍ତାଧାରାର ମୂଳସ୍ରୋତରେ ନିଜକୁ ଅତ୍ୟାଧୁନିକ ରୂପେ ପ୍ରତିଷ୍ଠିତ କରିପାରିଛନ୍ତି । ଏତାଦୃଶ ସମ୍ଭୋଗ ପ୍ରତିରୂପ ସାଧାରଣତଃ କଳତନ୍ତ ଦ୍ୱାରା ପ୍ରସ୍ତୁତ ବସ୍ତ୍ର ପ୍ରତି ଏକ ଅହେତୁକ ଅନୁରାଗରୁ ସ୍ପଷ୍ଟ ସୂଚନା ମିଳିଥାଏ । ଏଣୁ ହସ୍ତତନ୍ତ ବସ୍ତ୍ର ପାଇଁ ଏ ଶ୍ରେଣୀର ଗ୍ରାହକ ଏକ ସୁଦୃଢ଼ ବଜାର ଗଠନର ସହାୟକ ନୁହନ୍ତି । ଅନ୍ୟ ଏକ ଭାଗରେ ଦରିଦ୍ର ଓ ଦଳିତ ଜାତିର ବୁଣାକାରମାନେ ଯଥା - ଗଣ୍ଡା, କୁଲି, ମହରା, ପାତାତନ୍ତି ଓ ପାଙ୍କ ବିଦ୍ୟମାନ ଯେଉଁମାନେ କି ଶସ୍ତା ହସ୍ତତନ୍ତ ବସ୍ତ୍ର ଉତ୍ପାଦନ କରି ଗ୍ରାମାଞ୍ଚଳର କୃଷିଶ୍ରମିକ ତଥା ସମାଜର ଅନ୍ୟାନ୍ୟ ଦୁର୍ବଳବର୍ଗଙ୍କୁ ବିକ୍ରୟ କରି ପେଟ ପୋଷିଥାନ୍ତି । ଏହି ହସ୍ତତନ୍ତ ବସ୍ତ୍ରଗୁଡ଼ିକ କଳତନ୍ତ ଦ୍ୱାରା ପ୍ରସ୍ତୁତ ବସ୍ତ୍ର ଗୁଡ଼ିକ ଅପେକ୍ଷା ଶସ୍ତା ଓ ବଜାର ମଧ୍ୟ ଅପେକ୍ଷାକୃତ ସୁଦୃଢ଼ ଓ ସ୍ଥିର । ଅନ୍ୟ ପକ୍ଷରେ କହିବାକୁ ଗଲେ, ପଶ୍ଚିମାଞ୍ଚଳରେ ଦାରିଦ୍ର୍ୟ ହସ୍ତତନ୍ତ ଶିଳ୍ପକୁ ସମ୍ଭାଳି ରଖିଛି । ତେଣୁ ଦାରିଦ୍ର୍ୟ ଓ ଆତ୍ମ-ଶୋଷଣରେ ଶୋଷିତ ବୁଣାକାରମାନେ ଏକ ଭାରସାମ୍ୟ ମଧ୍ୟ ଦେଇ ଗତି କରୁଛନ୍ତି ଏବଂ ଏହି ଭାରସାମ୍ୟ ଜନିତ ଯନ୍ତ୍ରଣାରୁ ମୁକ୍ତି ମଧ୍ୟ ଏତେ ସହଜସାଧ୍ୟ ନୁହେଁ । କାରଣ ଦାରିଦ୍ର୍ୟ ଅପସାରଣର ଉଦ୍ୟମ କୌଣସି ଫଳପ୍ରଦ ରୂପ ନେଇ ପାରିନାହିଁ । କୃଷି ଶ୍ରମିକମାନଙ୍କ ସଂଖ୍ୟା ତଥା ସେମାନଙ୍କ ଦାରିଦ୍ର୍ୟ ପ୍ରତି ଜନଗଣନାରେ ବଢ଼ିଚାଲିଛି ଯଦିଓ ଦେଶରେ ଯୋଜନା ଓ ଅର୍ଥନୈତିକ ବିକାଶର ଉଦ୍ୟମ ଅବ୍ୟାହତ ରହିଛି । ତେଣୁ କେତେକ ବୁଣାକାର ଜାତିର କଳା ଓ କୌଶଳ ନିହାତି ତିଷ୍ଠି ରହିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏଣୁ ଏହା ସ୍ୱତଃସିଦ୍ଧ ଯେ ଓଡ଼ିଶାର ପଶ୍ଚିମାଞ୍ଚଳ ଭଳି ଗୋଟିଏ ପଛୁଆ ଅର୍ଥନୀତିରେ ଦ୍ୱୈତବାଦ ସଂଗଠନ ତଥା ସଂରକ୍ଷଣ ଆଞ୍ଚଳିକ ଦାରିଦ୍ର୍ୟ ହେତୁ ସମ୍ଭବପର ହୋଇ ପାରିଛି ।

ଅର୍ଥଶାସ୍ତ୍ରର ଦ୍ୱୈତବାଦର ଏହି ସ୍ୱତନ୍ତ୍ର ତାତ୍ତ୍ୱିକ ବ୍ୟାଖ୍ୟାକୁ ପ୍ରାବନ୍ଧିକ ଲେଣ୍ଡସ-ଡ଼ାଉନ-ରୋଡ଼ ବିରୋଧାଭାସ (Lands-down-Road Paradox) ରୂପେ ଆଖ୍ୟାୟିତ କରିଛନ୍ତି । ଲେଣ୍ଡସ୍-ଡ଼ାଉନ-

ରୋଡ୍ କଲିକତା ମହାନଗରୀର ଏକ ଜନାକୀର୍ଣ୍ଣ ଗଳି, ଯାହାର ଆଧୁନିକ ନାମ ଶରତ ବୋଷ ଏଭେନିଉ । ମଣିଷ ତଥା ଦ୍ରବ୍ୟମାନଙ୍କ ଗମନାଗମନ ପାଇଁ ବର୍ଣ୍ଣିତ ଗଳିରେ ଅନେକ କ୍ରିୟାଶୀଳ ପଦ୍ଧତିର ପ୍ରଚଳନ ଦେଖିବାକୁ ମିଳେ, ଠିକ୍ ଭାରତୀୟ ବୟନ ଶିଳ୍ପ ସଦୃଶ । ପ୍ରତ୍ୟେକ ପଦ୍ଧତି ମଣିଷ ସେବାରେ ନିୟୋଜିତ ଓ ବଜାର ପ୍ରତିଯୋଗିତାରେ ଅବିଚଳିତ ଓ ସ୍ଥିର ଅଟେ । ପ୍ରାବନ୍ଧିକ ଏହି ସ୍ଥିର, କ୍ରିୟାଶୀଳ ଉତ୍ପାଦନ ଶୈଳୀ ସମୂହର ଆକାର ଓ ପ୍ରଶସ୍ତତା ଦୃଷ୍ଟିକୋଣରୁ ସୁଦୃଢ଼ ସ୍ଥିତିକୁ ଯାହାକି ଅଗ୍ରଣୀ, ପ୍ରତିପରିଣୀଳ ଉତ୍ପାଦନ ଶୈଳୀ ସହ ତୁଳନୀୟ, ଏକ ବିରୋଧାଭାସ ବୋଲି ବିବେଚନା କରନ୍ତି । କାରଣ ପୁଞ୍ଜିଗତ ବିକାଶ ପଦ୍ଧତିରେ ପଛୁଆ, ଗତାନୁଗତିକ ଉତ୍ପାଦନ ଶୈଳୀଗୁଡ଼ିକ କ୍ଷୟ ପ୍ରାପ୍ତ ହୋଇଥାନ୍ତି ।

ଲେଣ୍ଡସ୍-ଡ଼ାଉନ-ରୋଡ଼ ବିରୋଧାଭାସ ଯାହାକି ପ୍ରଫେସର ଆର.ଏସ୍. ରାଓଙ୍କ ଦ୍ୱାରା ଲିଖିତ ଉକ୍ତ ପୁସ୍ତକର ଅଗ୍ରଲେଖାରେ ସୂଚିତ, ଏକ ବ୍ୟାପକ ତାତ୍ତ୍ୱିକ ଅବତାରଣା ବୋଲି ଆମ୍ଭର ଧାରଣା । ଅର୍ଥଶାସ୍ତ୍ରରେ ଦ୍ୱୈତବାଦ ସମ୍ପର୍କରେ ଅନେକ ତତ୍ତ୍ୱ ରହିଛି ଯଥା ସାମାଜିକ ଦ୍ୱୈତବାଦ ତତ୍ତ୍ୱ, ଶ୍ରମବଜାରର ଦ୍ୱୈତବାଦ ତତ୍ତ୍ୱ, ଶିଳ୍ପ କୌଶଳର ଦ୍ୱୈତବାଦ ତତ୍ତ୍ୱ, ଅର୍ଥବଜାରର ଦ୍ୱୈତବାଦ ତତ୍ତ୍ୱ, ଶିଳ୍ପ କୌଶଳର ଦ୍ୱୈତବାଦ ତତ୍ତ୍ୱ ଇତ୍ୟାଦି । ପ୍ରତ୍ୟେକ ଦ୍ୱୈତବାଦ ତତ୍ତ୍ୱ ସମସ୍ୟାର ଏକ ଆଂଶିକ ବ୍ୟାଖ୍ୟା ଅଟେ । କାରଣ ଏ ତତ୍ତ୍ୱଗୁଡ଼ିକ ମାନବ ସମାଜର ଏକ ନିର୍ଦ୍ଦିଷ୍ଟ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି ଏବଂ ପ୍ରତ୍ୟେକ ତତ୍ତ୍ୱ ଦାରିଦ୍ର୍ୟ ଦ୍ୱାରା ଦୃଢ଼ୀବଦ୍ଧ ।

ଭାରତୀୟ ଅର୍ଥନୀତି ପରିପ୍ରେକ୍ଷୀରେ ଅର୍ଥଶାସ୍ତ୍ରର ଦ୍ୱୈତବାଦ ତତ୍ତ୍ୱର ଦାରିଦ୍ର୍ୟ-ଭିତ୍ତିକ ବ୍ୟାଖ୍ୟା ଏକ ଯୁକ୍ତିଯୁକ୍ତ ତର୍କ ଉପରେ ପର୍ଯ୍ୟବସିତ । କାରଣ ପ୍ରତ୍ୟେକ ମଣିଷ ନିଜ ଜୀବନକୁ ଉନ୍ନତ ତଥା ଆରାମଦାୟକ କରିବାକୁ ସତତ ଉଦ୍ୟମଶୀଳ । ଏଣୁ ପାର୍ଥିବ ସମୃଦ୍ଧିରେ ମଣିଷ ନିଜର କର୍ମ, ପରିଶ୍ରମ ଓ ଦୃଷ୍ଟିଭଙ୍ଗୀରେ ମଧ୍ୟ ଆବଶ୍ୟକ ପରିବର୍ତ୍ତନ ଆଣିଥାଏ । ଏହି ପରିବର୍ତ୍ତନର ଏକ ମୁଖ୍ୟ ଦିଗ ହେଲା ଉତ୍ତମ ଓ ମନୋହର ଦ୍ରବ୍ୟ ପ୍ରତି ଏକ ସ୍ୱତନ୍ତ୍ର ଅନୁରାଗ ଯାହାକି ସାମାଜିକ ସମ୍ପର୍କ, ଚାଲିଚଳଣୀ, ରୀତିନୀତି ଇତ୍ୟାଦିକୁ ପ୍ରଭାବିତ କରିଥାଏ । ଉଦାହରଣ ସ୍ୱରୂପ ସହର ଲୋକମାନଙ୍କ ଆଗ୍ରହ ସୁବିଧା ସୁଯୋଗ ନେଇ ବିଦେଶୀ ଦ୍ରବ୍ୟ କ୍ରୟ କରିବାକୁ ବାଧ୍ୟ କରିଥାଏ ଯେପରି କି ଗାଉଁଲି ଲୋକମାନଙ୍କ ଆଗ୍ରହ ସହରୀ ଦ୍ରବ୍ୟ କ୍ରୟ କରିବାକୁ ଉତ୍ସାହିତ କରିଥାଏ । ଗାଉଁଲି ଲୋକମାନଙ୍କ ସହରୀ ଦ୍ରବ୍ୟ ପ୍ରତି ଆକର୍ଷଣ ଥିଲେ ହେଁ, ସେମାନଙ୍କ ପାଖରେ କ୍ରୟଶକ୍ତିର ଅଭାବ ସୂଚିତ ହୁଏ । ଗ୍ରାମାଞ୍ଚଳରେ କ୍ରୟଶକ୍ତିର ଅଭାବକୁ ତର୍ଜମା କଲେ ମନେ ହୁଏ ଗାଁ ଗହଳରେ ବିଶେଷ ଉଦ୍‌ବୃତ୍ତାଂଶ ଗଠନ ହୋଇ ପାରୁନାହିଁ କିମ୍ବା ଯାହାକିଛି ଉଦ୍‌ବୃତ୍ତାଂଶ ସୃଷ୍ଟି ହେଉଛି ତାହା ସହରାଭିମୁଖୀ କିମ୍ବା ଅପରିଣାମଦର୍ଶୀ ସମ୍ଭୋଗରେ ନଷ୍ଟ ହୋଇ ଯାଉଛି । ବସ୍ତୁତଃ ଦେଖାଯାଉଛି ଯେ ବିଗତ ବର୍ଷମାନଙ୍କରେ ଗ୍ରାମାଞ୍ଚଳ ଆୟ ସଂରଚନା କ୍ଷେତ୍ରରେ କୌଣସି ଆଖି ଦୃଶିଆ ପରିବର୍ତ୍ତନ ପରିଲକ୍ଷିତ ହୋଇ ନାହିଁ । କାରଣ ଅର୍ଥନୈତିକ ବିକାଶ ପ୍ରକ୍ରିୟାରୁ ଉଦ୍‌ବୃତ୍ତ ଲାଭ ଗ୍ରାମାଞ୍ଚଳର ତଳସ୍ତରକୁ ପହଞ୍ଚି ପାରିନାହିଁ । ଏ ପରିପ୍ରେକ୍ଷୀରେ ମୁଖ୍ୟ ଆଲୋଚନା ପ୍ରସଙ୍ଗ ହେଉଛି ପୁଞ୍ଜିପ୍ରବଣ ଉତ୍ପାଦନ ଶୈଳୀରେ ବଜାର ସଂପ୍ରସାରଣ ପ୍ରଭାବର ସ୍ୱଳ୍ପତା ଯେଉଁଠାରେ କି ପ୍ରତି ବିନିଯୋଗ ତଥା ଶ୍ରମ ମାତ୍ରାରେ ପୁଞ୍ଜିର ଆବଶ୍ୟକତା ମାତ୍ରାଧିକ ଥାଏ କିନ୍ତୁ ପ୍ରତି ବିନିଯୋଗ ମାତ୍ରାରେ ସୃଷ୍ଟି ହେଉଥିବା କ୍ରୟଶକ୍ତି ଅତି ଅଳ୍ପ ଥାଏ । ଯଦିଓ ଉତ୍ପାଦିତ ସାମଗ୍ରୀ ଅଧିକ ଥାଏ । ଏପରି ବିବଦମାନ ପରିସ୍ଥିତି ଏକ ଦିଗରେ ବିନିଯୋଗର ପ୍ରାବଲ୍ୟ ଓ ଅନ୍ୟ ଦିଗରେ ଉତ୍ପାଦନ କ୍ଷମତାରେ ନିଷ୍କ୍ରିୟତା ସୃଷ୍ଟି କରିଥାଏ । ଯଦି ସ୍ଥାନୀୟ ସମ୍ବଳ, କୌଶଳ ଓ ଚାହିଦାରେ ବୈପ୍ଳବିକ ପରିବର୍ତ୍ତନ ମାଧ୍ୟମରେ ଔଦ୍ୟୋଗୀକରଣ ପ୍ରକ୍ରିୟାକୁ ପ୍ରୋତ୍ସାହନ ଦିଆଯାଇଥାନ୍ତା, ତାହେଲେ ହୁଏତ ବିକାଶ ପ୍ରକ୍ରିୟାରୁ ଉଦ୍‌ବୃତ୍ତ ଲାଭର ଭାଗିଦାରୀ ସଂଖ୍ୟା ଅପେକ୍ଷାକୃତ ଅଧିକ ହୋଇପାରିଥାନ୍ତା । କିନ୍ତୁ ଉତ୍ପାଦନ ଶୈଳୀ, ଯନ୍ତ୍ରପାତି ଓ ତଦ୍‌ଜନିତ ଜ୍ଞାନ କୌଶଳ ବିଦେଶରୁ-ସଂଗୃହୀତ ହେବା ଫଳରେ ବୌଦ୍ଧିକ ଓ ଯାନ୍ତ୍ରିକ ବିକାଶ ପ୍ରକ୍ରିୟାର ଅନେକ ସ୍ତର ଆମେ ଅନାୟାସରେ ଅତିକ୍ରମ କରିପାରିଛୁ । ତେଣୁ ଦାରିଦ୍ର୍ୟ ଭଳି ବ୍ୟାପକ ତଥା ଉତ୍କଟ ସମସ୍ୟାର ନିକଟ ଭବିଷ୍ୟତରେ ଫଳପ୍ରଦ ସମାଧାନର ପନ୍ଥା ନାହିଁ କହିଲେ ଚଳେ । ଅର୍ଥନୈତିକ ବିକାଶର ଢ଼ାଞ୍ଚା ଓ ବଣ୍ଟନ ବ୍ୟବସ୍ଥାକୁ ଅନୁଧ୍ୟାନ କଲେ ଲେଣ୍ଡସ୍-ଡ଼ାଉନ-ରୋଡ଼ ବିରୋଧାଭାସ ନିଶ୍ଚିତ ରୂପେ ସାମାଜିକ ବିଜ୍ଞାନୀମାନଙ୍କ ପାଇଁ ଏକ ସମସ୍ୟା ହୋଇ ରହିବ । ସମ୍ଭବତଃ, ସବୁଜ ବିପ୍ଳବ ସହିତ ଏକ ଉଦ୍ଦେଶ୍ୟମୂଳକ, ଲାଭଦାୟକ ଗ୍ରାମ୍ୟ ଔଦ୍ୟୋଗୀକରଣ ପରିକଳ୍ପନା ସ୍ଥାନୀୟ ଲୋକମାନଙ୍କ ଚାହିଦା ପୂରଣ କରିବାରେ ସମର୍ଥ ହେବ । ଭାରତୀୟ ପ୍ରଚଳିତ ଉତ୍ପାଦନ ପଦ୍ଧତିରେ ଆବଶ୍ୟକ ପରିବର୍ତ୍ତନ ଆଣି ଏକ ଯୁକ୍ତିଯୁକ୍ତ ଉତ୍ପାଦନ ପଦ୍ଧତି ପ୍ରଚଳନରେ ହିଁ ଦାରିଦ୍ର୍ୟ ଭଳି ଉତ୍କଟ ସମସ୍ୟାର ଆଶୁ ସମାଧାନର ସମ୍ଭାବନା ରହିଛି । ଏହା ଯଦି ସତ୍ୟ ହୁଏ, ଲେଣ୍ଡସ-ଡ଼ାଉନ-ରୋଡ୍ ବିରୋଧାଭାସ ଛାଏଁ, ଛାଏଁ ଅପସରି ଯିବ ।

ପ୍ରାଧ୍ୟାପକ
ସୋନପୁର ମହାବିଦ୍ୟାଳୟ
ସୋନପୁର, ୭୬୮୦୧୭

—0—

# ବିପ୍ଳବୀ ଆଦିବାସୀ ବୀର ଚକ୍ର ବିଶୋଇ

ଡ଼କ୍ଟର ଜଗନ୍ନାଥ ମହାନ୍ତି

ଆଦିବାସୀ ବୀର ଦୋରା ବିଶୋଇଙ୍କ ପରେ ଆସିଲେ ତାଙ୍କର ପୁତୁରା ଚକ୍ର ବିଶୋଇ । ଦକ୍ଷିଣରେ ଘୁମୁସର (ଆଜିର ଭଞ୍ଜନଗର) ଠାରୁ ଆରମ୍ଭ କରି ପଶ୍ଚିମରେ ଅନୁଗୋଳ ଯାଏ ଏକ ବିରାଟ ଅଞ୍ଚଳରେ ସେ ବିଦ୍ରୋହର ନିଆଁ ଵିଞ୍ଚି ଦେଇଥିଲେ । ତାଙ୍କ ଯୋଗୁଁ ଇଂରେଜ ଶାସନ ଟଳି ଟଳାନ୍ତ ହୋଇ ପଡ଼ିଥିଲା । ଫିରିଙ୍ଗ ଫଉଜଙ୍କ ମଧ୍ୟରେ କୋକୁଆଭୟ ଖେଳି ଯାଇଥିଲା ।

ଘୁମୁସୁର ଥିଲା ବିଦ୍ରୋହର କେନ୍ଦ୍ର ସ୍ଥାନ ୧୮୩୫ ମସିହାରେ । ଚକ୍ର ବିଶୋଇଙ୍କର ବୟସ ସେତେବେଳେ ମାତ୍ର ତେର ବର୍ଷ । ଦୋରା ବିଶୋଇଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଇଂରେଜ ଶାସକମାନଙ୍କୁ ଥରହର କରିଥିଲା । ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ସେତେବେଳେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ଚକ୍ର ବିଶୋଇ ଏବେ ବିଦ୍ରୋହର ନିଆଁରେ ଝାସ ଦେଲେ । ତାଙ୍କର ବାପା ଶାମ ବିଶୋଇଙ୍କୁ ଫିରିଙ୍ଗ ଫଉଜ ସାମାନ୍ୟ ଏକ ଗଣ୍ଡଗୋଳରେ ହତ୍ୟା କରିଥିଲେ । ତେଣୁ ଚକ୍ର ଏହାର ପ୍ରତିଶୋଧ ନେବାକୁ ଚେଷ୍ଟାକଲେ । ପୁଣି ଇଂରେଜମାନେ ଘୁମୁସର ରାଜାଙ୍କୁ ଗାଦିରୁ ତଡ଼ିଦେଇଥିଲେ । ସେଥିପାଇଁ ତାଙ୍କର ଅନୁଗତ ପ୍ରଜା ଭାବରେ ଚକ୍ର ବିଶୋଇ ଖୁବ୍ ରାଗିଯାଇଥିଲେ । ପୁଣି ଆଦିବାସୀ ସର୍ଦ୍ଦାର ଭାବରେ ପରମ୍ପରା କ୍ରମେ ଯେଉଁସବୁ ସୁବିଧା ପାଉଥିଲେ, ସେଥିରୁ ବିଶୋଇ ବଂଚିତ ହୋଇଥିଲେ ।

ଏହିସବୁ କାରଣରୁ ଯୁବକ ଚକ୍ର ବିଶୋଇ ଘୁମୁସର ଅଞ୍ଚଳରେ ଆନ୍ଦୋଳନର ନିଆଁ ଜଳାଇଥିଲେ । କନ୍ଧଯୁବକମାନେ ତାଙ୍କ ନେତୃତ୍ୱରେ ମାତି ଉଠିଥିଲେ । ସେମାନେ ଧନୁଶର ଧରି ଲଢ଼େଇ ପାଇଁ ବାହାରି ପଡ଼ିଥିଲେ । ଇଂରେଜ ସରକାରଙ୍କ କର୍ମଚାରୀମାନଙ୍କୁ ହାଣମାର କରିବାରେ ଲାଗିଲେ । ସରକାରୀ ଅଫିସମାନ ଲୁଟପାଟ ଆଉ ପୋଡ଼ାଜଳା କରିବାରେ ଡିବେ ହେଲେ, ହେଜା କଲେ ନାହିଁ ।

କନ୍ଧମାନଙ୍କର ଗରିଲା ଯୁଦ୍ଧରେ ଫିରିଙ୍ଗ ଫଉଜ ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ଅନୁଗୋଳ, ବଉଦ, ସୋନପୁର, ମଦନପୁର, କଳାହାଣ୍ଡି, ପାରଳାଖେମୁଣ୍ଡି ଆଦି ଅଞ୍ଚଳରେ ବିଦ୍ରୋହର ନିଆଁ ଜଳିବାରେ ଲାଗିଲା । ଅନେକ ସ୍ଥାନରେ ଫିରଙ୍ଗ ଫଉଜ ପରାସ୍ତ ହେଲେ । ବହୁ ସିପେହିଙ୍କୁ କନ୍ଧ ବିଦ୍ରୋହୀମାନେ ହତ୍ୟା କଲେ । ଇଂରେଜ ସରକାରର ଶତଚେଷ୍ଟା ସତ୍ତ୍ୱେ ତାଙ୍କୁ ଧରିବା ସମ୍ଭବ ହେଲା ନାହିଁ ।

ଘୁମୁସରର ଏକ ଗାଁ ତୁଳାସିଙ୍ଗି । ୧୮୫୪ ମସିହାରେ ବିଦ୍ରୋହୀମାନେ ସେଇ ଗାଁ ଉପରେ ଚଢ଼ୋଉ କଲେ । ଲୋକମାନଙ୍କ ଧନସମ୍ପତ୍ତି ଲୁଟପାଟ କଲେ । ଇଂରେଜ ସରକାରଙ୍କ ଧାରଣା ହେଲା ଯେ, ଚକ୍ର ବିଶୋଇଙ୍କ ନେତୃତ୍ୱରେ ଏହି ବିଦ୍ରୋହ ଘଟିଲା । ଗଞ୍ଜାମ ମାଜିଷ୍ଟ୍ରେଟ କଟକ କମିଶନରଙ୍କୁ ଲେଖିଲେ ଯେ ତାଙ୍କୁ ଧରିବାକୁ ସବୁ ଉଦ୍ୟମ ହେଉ । କିନ୍ତୁ କମିଶନର ଜଣାଇ ଦେଲେ ଯେ ଚକ୍ର ବିଶୋଇ ବଉଦର ଏକ ନିଘଞ୍ଚ ଜଙ୍ଗଲ ମଝିରେ ଲୁଚି ରହିଛନ୍ତି । ସେ ତେଣୁ ଏଇ ଲୁଟପାଟ କାର୍ଯ୍ୟରେ ସଂପୃକ୍ତ ନୁହନ୍ତି ।

ତେବେ କମିଶନର ଗଞ୍ଜାମ ମାଜିଷ୍ଟ୍ରେଟଙ୍କୁ ଜଣାଇ ଦେଲେ ଯେ ସେ ବଉଦ ରାଜାଙ୍କୁ ଚକ୍ର ବିଶୋଇଙ୍କ ଉପରେ ସତର୍କ ଦୃଷ୍ଟି ରଖିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ତାଙ୍କୁ ଧରାଇଦେଲେ ପୁରସ୍କାର ମିଳିବ ବୋଲି ଇଂରେଜ ସରକାର ଘୋଷଣା କଲେ । ହେଲେ, କନ୍ଧ ବିଦ୍ରୋହୀମାନେ ଧନ ଲୋଭରେ ନିଜର ସର୍ଦ୍ଦାରଙ୍କୁ ଧରାଇ ଦେଲେନାହିଁ । କଟକ କମିଶନର ମଧ୍ୟ ବଙ୍ଗ ସରକାରଙ୍କ ବିଚାର ବିଭାଗ ସଚିବଙ୍କୁ ଜଣାଇ ଦେଲେ ଯେ ଚକ୍ର ବିଶୋଇ ଜଣେ ବିଦ୍ରୋହୀ ବୋଲି ତୁଳାସିଙ୍ଗି ଗାଁର ଲୁଟପାଟ ଘଟଣାରେ ଜଡ଼ିତ କରାଯାଇଛି । ମାତ୍ର ତାହା ସମ୍ଭବତଃ ମରୁଡ଼ି କ୍ଳିଷ୍ଟ ଲୋକମାନଙ୍କ ଦ୍ୱାରା ଘଟିଛି ବୋଲି ନିଜର ମତ ପ୍ରକାଶ କରିଥିଲେ ।

୧୮୮୫-୮୬ ମସିହାର କଥା । ଘୁମୁସରରେ କନ୍ଧମାନଙ୍କର ବିଦ୍ରୋହ ପୁଣି ଥରେ ଚେଇଁ ଉଠିଲା । ସେହି ସମୟରେ ବଉଦମାନଙ୍କରେ କନ୍ଧମାନେ ବି ମାତି ଉଠିଲେ । କଟକ କମିଶନର ସାମୁଏଲଙ୍କ ନିର୍ଦ୍ଦେଶରେ ସେସବୁ ବିଦ୍ରୋହ ଦମନ କରାଗଲା । ବଉଦ ଅଞ୍ଚଳ ଇଂରେଜ ଶାସନାଧୀନ ହେଲା ବୋଲି ଘୋଷଣା ପ୍ରକାଶ ପାଇଲା ।

ଦୀନବନ୍ଧୁ ପଟ୍ଟନାୟକଙ୍କୁ ବଉଦ ଅଞ୍ଚଳର ତହସିଲଦାର ନିଯୁକ୍ତ କରାଗଲା । ଇଂରେଜମାନେ କଣ୍ଟାକୁ କଣ୍ଟାରେ କାଢ଼ିବାର ନୀତି ଧରିଲେ । ଏସବୁ ବିଦ୍ରୋହ ପରେ ଚକ୍ର ବିଶୋଇ ଫୁଲବାଣୀ ମାଳ ଅଞ୍ଚଳର ଘନ

ଜଙ୍ଗଲ ଭିତରେ ଲୁଚି ରହିଲେ । ଫିରିଙ୍ଗି ଫଉଜ ସର୍ବଦା ତାଙ୍କ ପିଛା ଧରିବାର ଜାଣି ସେ ପ୍ରତିଦିନ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଚାଲି ଯାଉଥିଲେ ।

୧୮୫୬ ମସିହା ମାର୍ଚ୍ଚ ମାସ କଥା । ଛୋଟନାଗପୁର ଅଞ୍ଚଳର ପାଟଣା ଗଡ଼ଜାତ ଅଧୀନସ୍ଥ ଆଠଗାଓଁରେ ଚକ୍ର ବିଶୋଇ ରହୁଛନ୍ତି ବୋଲି ଖବର ମିଳିଲା । ଘୁମୁସରର ଇଂରେଜ ଅଧିକାରୀ ମ୍ୟାକ୍‌ଡୋନାଲ୍‌ଡ୍ ସାହେବ ସେଠାକୁ ନିଜେ ଯିବାକୁ ସାହସ କଲେ ନାହିଁ । ଦୀନବନ୍ଧୁ ପଞ୍ଚସ୍ତରୀ ଜଣ ସୈନ୍ୟଙ୍କୁ ଧରି ଆଠଗାଓଁକୁ ଗଲେ । ଅଚାନକ ଭାବରେ ଚକ୍ରବିଶୋଇ ଓ ତାଙ୍କର ସହକର୍ମୀମାନଙ୍କ ଉପରେ ଚଢ଼ାଉ କଲେ ।

,ସୌଭାଗ୍ୟକୁ ଚକ୍ରବିଶୋଇ ସେଠାରୁ ଖସି ପଳାଇଥିଲେ । ହେଲେ, ତାଙ୍କର ପ୍ରଧାନ ସହକାରୀ ଭୁତିଆ ସର୍ଦ୍ଦାର୍ ଓ ଅନ୍ୟ କେତେଜଣ ଧରାପଡ଼ି ଯାଇଥିଲେ । ସେଥିପାଇଁ ସେମାନଙ୍କ ମଧ୍ୟରେ ଦୁଇଶହ ଟଙ୍କାର ପୁରସ୍କାର ବାଣ୍ଟି ଦିଆଯାଇଥିଲା ।

ଧରା ଯାଇଥିବା ଲୋକମାନଙ୍କ ମଧ୍ୟରେ ଜଣେ ସନ୍ୟାସୀ ଥିଲେ । ତାଙ୍କୁ ଚକ୍ରବିଶୋଇ ଭାବି ଦୀନବନ୍ଧୁ ଓ ତାଙ୍କର ସୈନ୍ୟମାନେ ଧରିନେଇଥିଲେ । କିନ୍ତୁ ସେ ଅଲଗା ଲୋକ ବୋଲି ଜଣାପଡ଼ିବାରୁ ତାଙ୍କୁ ଛାଡ଼ି ଦିଆଯାଇଥିଲା । ଦୀନବନ୍ଧୁ ତାପରେ ଆଉ କେତେଥର ଜଙ୍ଗଲର ବିଭିନ୍ନ ଭାଗରେ ଚଢ଼ାଉ କରିଥିଲେ । ମାତ୍ର ସେ ଚକ୍ରବିଶୋଇଙ୍କୁ ଧରିବାରେ ସମର୍ଥ ହୋଇନଥିଲେ ।

୧୯୫୬-୫୭ ମସିହାର କଥା । ପାରଳାଖେମୁଣ୍ଡିରେ ଶବରମାନେ ବିଦ୍ରୋହ କଲେ । ସେମାନଙ୍କର ନେତା ଥିଲେ ରାମକୃଷ୍ଣ ଦଣ୍ଡସେନା । ସେମାନେ ପାରଳାଖେମୁଣ୍ଡିର ୫୦ ଟି ଗାଁରେ ଲୁଟପାଟ କରି ନିଆଁ ଲଗାଇ ଦେଇଥିଲେ । ସେନାପତି ଉଇଲସନ ବହୁ ସୈନ୍ୟ ସହିତ ଘନ ଜଙ୍ଗଲ ମଧ୍ୟରେ ପଶିଲେ । ଏହି ବିଦ୍ରୋହୀମାନଙ୍କ ଉପରେ ଅଚାନକ ଚଢ଼ାଉ କରି ବିଦ୍ରୋହକୁ ଦମନ କରିଥିଲେ । ସେମାନେ ଦଣ୍ଡସେନାଙ୍କୁ ଧରି ଫାଶି ଦେଇଥିଲେ ।

ଚକ୍ର ବିଶୋଇ ଏହି ବିଦ୍ରୋହରେ ସଂପୃକ୍ତ ବୋଲି ଜଣା ପଡ଼ିଥିଲା । ତେଣୁ ତାଙ୍କୁ ଧରିବାକୁ ଫିରିଙ୍ଗି ଫଉଜ ପ୍ରାଣାନ୍ତକ ଉଦ୍ୟମ କରିଥିଲେ । ହେଲେ, ତାଙ୍କୁ ଧରିବା ସେମାନଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ଓଡ଼ିଶାର କମିଶନର କକବର୍ଣ୍ଣ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଲେଖି ଜଣାଇଦେଲେ ଯେ ଚକ୍ର ବିଶୋଇ ତାଙ୍କର ପୁରୁଣା ଜାଗାକୁ ଛାଡ଼ି ଅନ୍ୟ କେଉଁ ନୂଆ ଅଞ୍ଚଳକୁ ଚାଲିଯାଇଛନ୍ତି । ସେ କୁଆଡ଼େ ଗଲେ ସେ ବିଷୟରେ କାହାର ଧାରଣା ନାହିଁ । ସମ୍ଭବତଃ ସେ ଉତ୍ତର ଭାରତର ଅଜଣା ଅଶୁଣା ଅଞ୍ଚଳକୁ ଚାଲି ଯାଇଥିଲେ ।

ସେ ପୁଣି ଲେଖିଥିଲେ ଯେ ଚକ୍ର ବିଶୋଇ ଦୀର୍ଘ ଦେଢ଼ ବର୍ଷ ହେଲା କେଉଁଠି ଦେଖା ହୋଇ ନାହାନ୍ତି କି ତାଙ୍କ କଥା ଶୁଣା ଯାଉନାହିଁ । ସେଥିଯୋଗୁଁ ଘୁମୁସର ଅଞ୍ଚଳରେ ସବୁ ଶାନ୍ତ ଓ ଧୀର ସ୍ଥିର । କୌଣସିଠାରେ ସେମିତି ବଡ଼ ଗଣ୍ଡଗୋଳ ଘଟିନାହିଁ । ମାତ୍ର ଚକ୍ର ବିଶୋଇଙ୍କ ଗରିଲା ଲଢ଼େଇରେ ଫିରିଙ୍ଗି ଫଉଜ ବାରମ୍ବାର ହଟି ଯାଉଥିଲେ । ତେଣୁ ଇଂରେଜ ସରକାର ଘୋଷଣା କରିଥିଲେ ଯେ ବିପ୍ଳବୀ ଚକ୍ର ବିଶୋଇ ଆପେ ଆପେ ଧରା ଦେଲେ ତାଙ୍କୁ କ୍ଷମା ଦିଆଯିବ । ମାସକୁ ମାସ ଚଳିବା ପାଇଁ ସାହାଯ୍ୟ ମଧ୍ୟ ଦିଆଯିବ ।

ମାତ୍ର ଚକ୍ର ବିଶୋଇଙ୍କ ଗୋଟିଏ ଦାବୀ ଥିଲା - ଘୁମୁସର ରାଜାଙ୍କୁ ବନ୍ଦୀଶାଳାରୁ ମୁକୁଳାଇ ଦିଅ । ତାଙ୍କୁ ରାଜଗାଦିରେ ବସାଅ । ତା'ପରେ ଯାଇ ସେ ନିଜେ ନିଜେ ଆସି ଇଂରେଜ ସରକାରଙ୍କୁ ଧରାଦେବେ ।

ଚକ୍ର ବିଶୋଇଙ୍କର ବିଦ୍ରୋହ-ଦମନରେ ଇଂରେଜ ସରକାର ପରାସ୍ତ ହୋଇଥିଲେ ହେଁ ତାଙ୍କୁ ଧରିବାର ଆଶା ଛାଡ଼ି ନଥିଲେ । ବଡ଼ଲାଟ ଲର୍ଡ଼ ଡେଲହାଉସୀ ପତ୍ର ଲେଖି ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଜଣାଇ ଥିଲେ ବିପ୍ଳବୀ ଚକ୍ରବିଶୋଇ ନିଶ୍ଚୟ ଆମ ହାତରେ ଧରା ପଡ଼ିବେ ।

କିନ୍ତୁ ବଡ଼ଲାଟ୍‌ଙ୍କର ଏତେ ଦମ୍ଭ, ଏତେ ଅଭିମାନ ଫସର ଫାଟି ଯାଇଥିଲା । ବିଦ୍ରୋହୀ ବୀର ଚକ୍ରବିଶୋଇ ୧୮୩୬ରୁ ୧୮୫୬ ଯାଏ ଇଂରେଜ ସରକାରଙ୍କ ସହିତ ଲଢ଼େଇ କରିଥିଲେ । ଓଡ଼ିଶାର ଘନ ବଣ ଜଙ୍ଗଲରେ ନିଜର ଜୀବନ କଟାଇଥିଲେ । ଇଂରେଜ ଶାସକମାନଙ୍କର ଯେତେ ପ୍ରଲୋଭନ ଆଉ ପ୍ରଚେଷ୍ଟା ସେସବୁକୁ ପଣ୍ଡ କରି ଦେଇଥିଲେ ।

ନିଜର ବ୍ୟକ୍ତିଗତ ଲାଭ ଉଠାଇବାକୁ ନଚାହିଁ ସେ ଜାତିର ଆଉ ଦେଶର ସ୍ୱାଧୀନତା ଓ ସମ୍ମାନକୁ ବଡ଼ ମନେ କରିଥିଲେ । ଘୁମୁସର ରାଜାଙ୍କୁ ରାଜଗାଦିରେ ବସାଇବା ପାଇଁ ତାଙ୍କର ପଣକୁ ରକ୍ଷା କରିବାକୁ ଶେଷ ଜୀବନ ଯାଏ ଚେଷ୍ଟା କରିଥିଲେ ।

ଖରାବର୍ଷା, ଶୀତ କାକର ମଧ୍ୟରେ ସେ ସେହି ଜଙ୍ଗଲ ଭିତରେ ଜୀବନ କଟାଇଥିଲେ । ଅଭାବ ଅସୁବିଧା, ଦୁଃଖକଷ୍ଟ ତାଙ୍କୁ ଲକ୍ଷ୍ୟ ପଥରୁ ଦୂରେଇ ଦେଇ ନଥିଲା । ସେ ଗୋଟିଏ ଦୀପଶିଖା ପରି ନିଜକୁ ତିଳେ ତିଳେ ଜାଳି ଦେଇଥିଲେ । ମୁକତିର ଆଲୁଅ ଅପେକ୍ଷାରେ ସେ ନିଜ ଜୀବନ ଦୀପକୁ ଜଙ୍ଗଲର ଘନ ଅନ୍ଧକାର ଭିତରେ ଲିଭାଇ ଦେଇଥିଲେ । ଧନ୍ୟ ସେହି ବିପ୍ଳବୀ ଚକ୍ରବିଶୋଇ । ଧନ୍ୟ ତାଙ୍କର ଦେଶପ୍ରେମ !

୨୯୩୫, ଗୌରୀନଗର
ଭୁବନେଶ୍ୱର-୭୫୧ ୦୦୨

—0—

# ‘ଦୁଃଖିନୀ-କନିକା’ର କବି ଆନନ୍ଦଚନ୍ଦ୍ର

ଇଂ. ଅରୁଣ କୁମାର ପଣ୍ଡା

ପୃଥିବୀରେ ଯେଉଁ ସବୁ ସ୍ଥାନରେ ଅତ୍ୟାଚାରୀ ଶାସନ ବିରୁଦ୍ଧରେ ବା ଏକ ଅବାଞ୍ଛିତ ପ୍ରଥା ବିରୁଦ୍ଧରେ ଲୋକମାନେ ସଂଘବଦ୍ଧ ହୋଇ ବିପ୍ଳବ କରି ସଫଳତା ପାଇଛନ୍ତି, ସେଠାକାର ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ ତାହାରି ମୂଳରେ କେତେକ ନିର୍ଦ୍ଦିଷ୍ଟ ବୁଦ୍ଧିଜୀବୀଙ୍କ ଦ୍ୱାରା ସୃଷ୍ଟ ସାହିତ୍ୟ ହିଁ ତାହା କରିବାକୁ ପ୍ରେରଣା ଯୋଗାଇଛି । ପ୍ରକୃତ ପକ୍ଷରେ ବିପ୍ଳବ ପାଇଁ ବିପ୍ଳବାତ୍ମକ ପୁସ୍ତକର ଆବଶ୍ୟକତା ଯଥେଷ୍ଟ ବେଶୀ । କବିଟିଏ ମଣିଷ ଭିତରର ଦୁଃଖ, ହତାଶା, ଅସହାୟତାକୁ ଅନୁଭବ କରି ସାହିତ୍ୟରେ ପ୍ରକାଶ କରେ, ଯାହାକି ବିପ୍ଳବ ପାଇଁ ବାଟ ଖୋଲି ଦିଏ ।

‘ଦୁଃଖିନୀ-କନିକା’ ହେଉଛି ସେଇମିତି ଏକ ବିପ୍ଳବାତ୍ମକ ପୁସ୍ତକ । ବିଂଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ କନିକାରେ ଅତ୍ୟାଚାରୀ ରାଜା ତଥା ଇଂରେଜ ସରକାରଙ୍କ ବିରୁଦ୍ଧରେ ଯେଉଁ ପ୍ରଜାଆନ୍ଦୋଳନ ମୁଣ୍ଡ ଟେକି ଥିଲା, ସେଇ ଆନ୍ଦୋଳନକୁ ସକ୍ରିୟ କରିବା ଦିଗରେ ଏହି ପୁସ୍ତକର ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ । ତତ୍‌କାଳୀନ ରାଜାଙ୍କର ଅମାନୁଷିକ ଅତ୍ୟାଚାରରେ ଅତିଷ୍ଠ ହୋଇ ଉଠୁଥିବା କନିକାବାସୀଙ୍କର ଏହା ଥିଲା ପଥ ପ୍ରଦର୍ଶକ । ସେତେବେଳେ ଏହା ଏମିତି ଆଲୋଡ଼ନ ସୃଷ୍ଟି କଲା ଯେ ଅତ୍ୟାଚାରୀ ରାଜା ତଥା ଇଂରେଜ ସରକାର ଏହି ପୁସ୍ତକ ବିକ୍ରିକୁ ବେଆଇନ ଘୋଷଣା କରିଥିଲେ ।

ଏହି ସଂଗ୍ରାମ ଚେତନା ସଂବଳିତ ‘ଦୁଃଖିନୀ-କନିକା’ ପୁସ୍ତକର ରଚୟିତା ହେଉଛନ୍ତି, ଓଡ଼ିଆ ବିପ୍ଳବ ସାହିତ୍ୟର ଧ୍ରୁବତାରା କବି ଆନନ୍ଦଚନ୍ଦ୍ର ଜେନା, ଯାହାଙ୍କର ଉନ୍ନତ ଚିନ୍ତାଧାରା, ପ୍ରକାଶ କରିବାର ନିର୍ଭୀକତା, ସ୍ପଷ୍ଟ ମତାମତ ଲୋକମାନଙ୍କୁ ବେଶ୍ ପ୍ରଭାବିତ କରିଥିଲା ।

ସେଦିନ ଥିଲା ୧୮୮୪ ଜୁଲାଇ ମାସ ୧୬ ତାରିଖ । ଏହି ଦିନ ଅଧୁନାତନ କେନ୍ଦ୍ରାପଡ଼ା ଜିଲ୍ଲାର ଡାବିକାଇଁଦା ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଖଗେଶ୍ୱର ଜେନା କଲିକତାରେ ରହୁଥିବାରୁ ସେ ମେଟ୍ରିକ୍ୟୁଲେସନ ପାସ୍ କରିବା ପରେ ଆହୁରି ଅଧିକ ପଢ଼ିବା ପାଇଁ କଲିକତା ଯାଇଥିଲେ । ସେଇଠାରେ ତାଙ୍କର ବୈପ୍ଳବିକ ମନୋଭାବର ଉନ୍ମେଷ ଘଟିଥିଲା । କଲିକତାରେ ଥିବା ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ, ଚିତ୍ତରଂଜନ ଦାସ, ଅରବିନ୍ଦ ଘୋଷ ଓ ରାସବିହାରୀ ବୋଷ ଆଦି ସଂଗ୍ରାମୀ ନେତାଗଣଙ୍କ ସଂସ୍ପର୍ଶରେ ଆସିବା ଦ୍ୱାରା ସେ ଇଂରେଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆଗଭର ହୋଇଥିଲେ । ତେଣୁ ୧୯୧୨ ମସିହାରେ ବଙ୍ଗଭଙ୍ଗ ଆନ୍ଦୋଳନରେ ଯୋଗ ଦେଇ ଜୀବନର ପ୍ରଥମ ଜେଲ୍ ବରଣ କରିଥିଲେ ।

ଏକଥା ଶୁଣି ତାଙ୍କର ପରିବାରବର୍ଗ ଦୁଃଖିତ ହେଲେ ଓ ତାଙ୍କୁ ସଂଗ୍ରାମଠାରୁ ଦୂରାଇବା ପାଇଁ ବିବାହର ଆୟୋଜନ କରି ଘରକୁ ନେଇ ଆସିଲେ ।

ମାତ୍ର ଅନ୍ୟାୟ, ଅତ୍ୟାଚାରର ବିରୋଧ କରିବା ପାଇଁ ଯାହାର ଜନ୍ମ, ତାକୁ ଯେତେ ଯାହା କଲେ ବି ସେ ଅବା ନିରବ ରହନ୍ତା କିପରି ? ସେତେବେଳେ ସେ ଗାଁକୁ ଆସି ଦେଖିଲେ ଗାଁରେ ବି ଅତ୍ୟାଚାରର ଦମନଲୀଳା ଚାଲିଛି । ସେ ସିନା କଲିକତାରେ କେବଳ ଇଂରେଜ ଅତ୍ୟାଚାରକୁ ସାମ୍ନା କରୁଥିଲେ, ମାତ୍ର କନିକାରେ ଦେଖିଲେ ଦୁଇଟି ଶକ୍ତିର ମିଳିତ ରୂପ । କନିକାର ସ୍ୱେଚ୍ଛାଚାରୀ ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓଙ୍କର ଦୌରାତ୍ମ୍ୟ ବିପକ୍ଷରେ ଲୋକଙ୍କୁ ମତାଇ ବିଦ୍ରୋହର ସୂତ୍ରପାତ କଲେ । ତାଙ୍କର ସେତେବେଳେ ପ୍ରଥମ ଲକ୍ଷ୍ୟ ହେଲା ଇଂରେଜମାନଙ୍କର ଗୋଲାମ ସାଜିଥିବା କନିକା ରାଜାଙ୍କୁ ହଟାଇବା ।

କନିକାରେ ଚାଲିଥିବା ଅନ୍ୟାୟ, ଅତ୍ୟାଚାରକୁ କବିତାରେ ରୂପ ଦେଇ ସେ ସୃଷ୍ଟି କରିଥିଲେ ‘ଦୁଃଖିନୀ-କନିକା’ ପୁସ୍ତକ । ଏହା ୧୯୨୨ ମସିହାରେ ପ୍ରକାଶିତ ହୋଇଥିଲା । ଏହା କନିକା ଇତିହାସର ଦୁଃଖ, ଦୈନ୍ୟ ଓ ମର୍ମନ୍ତୁଦ କାହାଣୀର ଜ୍ୱଳନ୍ତ ସ୍ୱାକ୍ଷର । ଏହାର ସ୍ୱର, ନିରୀହ ନିଷ୍ପେଷିତ ମଣିଷର ସ୍ୱର । ଏହା ମନଗଢ଼ା କବିତାର ସମାହାର ନୁହେଁ, ଅଙ୍ଗେ ନିଭା କାହାଣୀର ସାହିତ୍ୟିକ ରୂପାନ୍ତର ମାତ୍ର ।

କନିକାମାତାଙ୍କର ଦୁର୍ଦ୍ଦିନରେ କନିକାର ଯୋଗ୍ୟତମ ସୁତ ଆନନ୍ଦ ଚନ୍ଦ୍ର ଖୁବ୍ ମର୍ମାହତ ହୋଇଥିଲେ । ତାଙ୍କର ଲେଖନୀ ହୋଇ ଉଠିଲା ଚଳଚଞ୍ଚଳ । ନିରୀହ, ନିରନ୍ନ ମଣିଷର ବେଦନା ଭରା ଆର୍ତ୍ତ ଚିତ୍କାର ତାଙ୍କର ଦରଦୀ କଲମ ମୁନକୁ କରିଥିଲା ଆନ୍ଦୋଳିତ । ସାଧାରଣ ପ୍ରଜାଙ୍କ ପ୍ରତି ହେଉଥିବା ବର୍ବରତାକୁ ବରଦାସ୍ତ କରିବା ତାଙ୍କ ପକ୍ଷେ ଅସହ୍ୟ ହୋଇ ଉଠିଥିଲା । ତେଣୁ ସେସବୁକୁ ଲୋକମାନଙ୍କ ଆଗରେ ସ୍ପଷ୍ଟ କରି ଦେଇ,

ଲୋକମାନଙ୍କ ମନରେ ଜାତିପ୍ରେମର ବହ୍ନିଶିଖା ପ୍ରଜ୍ଜ୍ୱଳିତ କରିବାକୁ ସେ ଆଗେଇ ଆସିଥିଲେ ।

ସେ କ୍ଷତବିକ୍ଷତ ଜନନୀ କନିକାକୁ 'ଦୁଃଖିନୀ' ଭାବରେ ସଂବୋଧନ କରି ଆରମ୍ଭ କରିଥିଲେ ତା'ର ସ୍ତବ ପାଠ । ସେଇ ଦୁଃଖିନୀ କନିକାର ଦୁଃଖକୁ ସେ ୬୪ ଟି ଅଭିଯୋଗ ଆକାରରେ ଲେଖିଥିଲେ । ସବୁଗୁଡ଼ିକ ଲଳିତ ପଦବିନ୍ୟାସରେ ଥିଲା ଜୀବନ୍ତ । ସରଳ ତରଳ ଭାବର ପରିପ୍ରକାଶରେ ତାହା ହୋଇଥିଲା ଆବେଗଧର୍ମୀ । ସାଧାରଣ ପାଠକ ପାଠିକାଙ୍କ ମନରେ ସଂଗ୍ରାମର ଦାଗ ଆଙ୍କି ଦେବା ପାଇଁ ସେଥିରେ ଯାଦୁ ଭରି ରହିଥିଲା । ତାହା ପାଠ କଲା ମାତ୍ରେ ଦେହରେ ଜାଗ୍ରତ ହେଉଥିଲା ପ୍ରତିହିଂସା । ଅଙ୍କୁରିତ ହେଉଥିଲା ଜାତିପ୍ରେମ । କନିକାକୁ ଶୋଷଣମୁକ୍ତ କରିବା ପାଇଁ ସଂଚରିତ ହେଉଥିଲା ଶତ ସିଂହର ବଳ ।

ତାଙ୍କର କବିତାରେ, ସାଧାରଣ ଭାଷା ଭିତରେ ଅସାଧାରଣ ଗୁଣ ନିହିତ ଥିଲା । ରାଜାଙ୍କର କାର୍ଯ୍ୟକଳାପ ପ୍ରତି ବ୍ୟଙ୍ଗୋକ୍ତି ପ୍ରକାଶ କରାଯାଇଥିଲା । ଅତି ଖୋଲାଖୋଲି ଭାବରେ ସେ ରାଜାଙ୍କର ଯଥେଚ୍ଛାଚାରିତାକୁ ବିରୋଧ କରିଥିଲେ । କନିକା ମାଟିରେ ଚାଲୁଥିବା କୌଣସି ଅଘଟଣ ତାଙ୍କର ତୀକ୍ଷ୍ଣ ଆଖିରୁ ବାଦ ଯାଉ ନଥିଲା । ସେସବୁର ସୂକ୍ଷ୍ମ ରୂପାୟନ ତାଙ୍କର ସୃଷ୍ଟିକୁ କରିଥିଲା ବିପ୍ଳବ ପ୍ରଣୋଦିତ ।

ତତ୍କାଳୀନ କନିକାରେ ଘଟୁଥିବା ସତ୍ୟ ଘଟଣାର ସୁନ୍ଦର ରୂପାୟନ ଘଟିଥିଲା 'ଦୁଃଖିନୀ କନିକା' ପୁସ୍ତକରେ । ସବୁ ପ୍ରକାର ଅଘଟଣ ମୂଳରେ ଏକତାର ଅଭାବ ରହିଛି ବୋଲି ଦର୍ଶାଇ କବି ଲେଖିଛନ୍ତି-

''ଏହି ଯେ ଭେଦାଭେଦ ଜ୍ଞାନ, ଆମ୍ଭକୁ କରିଛି ଅଜ୍ଞାନ
ଆଗରୁ ନ ଥିଲେ ସେପରି, ହୋଇନଥାନ୍ତେ ଏତେ ସରି ।''

ପ୍ରକୃତ ପକ୍ଷରେ ଏକତାର ଅଭାବରେ ମଣିଷ ସବୁ ସମସ୍ୟାକୁ ଆହ୍ୱାନ କରେ । ନିଜ ପ୍ରତି ହେଉଥିବା ଅବିଚାରରେ ମୂକ ପାଲଟିଯାଏ । ଏହା ହିଁ ଘଟିଥିଲା କନିକାରେ । ରାଜା ନିଜ ଇଚ୍ଛା ମୁତାବକ ଶାସନ ଚଳାଇଥିଲେ । ଯିଏ ପ୍ରତିବାଦ କରୁଥିଲା, ସେ କଠିନ ଦଣ୍ଡରେ ଦଣ୍ଡିତ ହେଉଥିଲା । କନିକାର ମାଟି ହୋଇଥିଲା ନର ରକ୍ତରେ ଜୁବୁବୁଡୁ । ସେତେବେଳର ଅତ୍ୟାଚାରକୁ ବର୍ଣ୍ଣାଇବାକୁ ଯାଇ କବି ଲେଖିଛନ୍ତି -

''କେ' ଗଧ ଚୋପି ମୁଣ୍ଡାଇଲା, କେ କାନ ମୋଡ଼ିଆ ଖାଇଲା
ଗୋଡ଼େ କେ' ଉଠିଲା ବସିଲା, ପଥରେ ନାକ କେ ଘଷିଲା
କେ' କାଦୁଅରେ ପୋତାହେଲା, କେ ସାତ ବେଣ୍ଟିଆ ହୋଇଲା ।''

ଏହିପରି ଅନେକ ଅବିଚାରର ସଫଳ ରୂପାୟନ ଘଟିଛି ଏହି 'ଦୁଃଖିନୀ-କନିକା' ପୁସ୍ତକରେ । ଏହି ପୁସ୍ତକର ପ୍ରକାଶନ ଫଳରେ ଓଡ଼ିଶାର ପ୍ରତିଷ୍ଠିତ ଲୋକମାନେ କନିକା ଅତ୍ୟାଚାର ବିଷୟରେ ଅବଗତ ହୋଇ ତା'ର ପ୍ରତିକାର ପାଇଁ ଉଦ୍ୟମ କରିଥିଲେ । ''ଦୁଃଖିନୀ-କନିକା' ହୋଇ ଉଠିଲା ଏକ ଶୋଷିତ ଓ ନିର୍ଯ୍ୟାତିତ ସମାଜର ପ୍ରତୀକ । ଉତ୍କଳମଣି ଗୋପବନ୍ଧୁ ଏହି ବହି ପାଠ କରି ତାଙ୍କ ପାଖକୁ ଚିଠିରେ ଲେଖିଥିଲେ - ''ତୁମେ ସାରା ଜାତିର ଗର୍ବ ଓ ଗୌରବ । ଅତ୍ୟଧିକ କରପୀଡ଼ା ଓ ସାମନ୍ତବାଦୀ ଶୋଷଣ କ୍ଳିଷ୍ଟ କନିକା ଜମିଦାରୀକୁ ଦୁଃଖିନୀ କନିକା ବୋଲି ସମ୍ବୋଧନ କରି ତୁମେ ଜନମାନସକୁ ଯେମିତି ସ୍ପନ୍ଦିତ କରି ଦେଲ, ସେଥିପାଇଁ ତୁମେ କନିକାର ମୁକୁଟ ବିହୀନ ସମ୍ରାଟ । ମୁଁ ଆଜି ଠାରୁ ତୁମକୁ ସମ୍ବୋଧନ କରୁଛି 'ଦୁଃଖିନୀ-କନିକା' ।''

ଆହୁରି ମଧ୍ୟ ଏହାର ଇଂରାଜୀ ଅନୁବାଦ ଗାନ୍ଧିଜୀ ପଢ଼ିବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେ କରିଥିଲେ । ସେ ଏହାକୁ ପଢ଼ି ଏତେ ମୁଗ୍ଧ ହେଲେ ଯେ ସେ ତାଙ୍କର 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ଏହା ପ୍ରକାଶିତ କରିଦେଲେ । ଫଳରେ କନିକାର ଦୁଃଖ, ନିର୍ଯ୍ୟାତନା ସାରା ଭାରତରେ ବ୍ୟାପିଗଲା । ସମସ୍ତେ କବି ଆନନ୍ଦଚନ୍ଦ୍ରଙ୍କୁ ଭୂରି ଭୂରି ପ୍ରଶଂସା କଲେ ।

ମାତ୍ର ଏକଥାରେ ରାଜା ରକ୍ତମୁଖା ହୋଇ ଉଠିଲେ । ସେ ଆନନ୍ଦ ଚନ୍ଦ୍ରଙ୍କୁ କନିକାରୁ ନିର୍ବାସିତ କଲେ ଓ ତାଙ୍କର ସମସ୍ତ ସଂପତ୍ତି ବାଜ୍ୟାପ୍ତ କରାଗଲା । ମାତ୍ର ଏଥିରେ ସେ ବିଚଳିତ ହୋଇ ନଥିଲେ ।

୧୯୪୬ ମସିହା ଜାନୁଆରୀ ୨୭ ତାରିଖରେ ଏହି ବିପ୍ଳବୀ କବିଙ୍କର ମହାପ୍ରୟାଣ ଘଟିଲା । ସେ ଚାଲିଗଲେ ସିନା, ଆମ ପାଖରେ ଛାଡ଼ି ଦେଇଗଲେ ତାଙ୍କର ଅମର କୀର୍ତ୍ତି । ସେସବୁକୁ ସାଇତି ରଖିବା ଆମର ପରମ କର୍ତ୍ତବ୍ୟ ।

ଗ୍ରା/ପୋ : ତୋଟାପଡ଼ା
ଭାୟା : ଘଣ୍ଟେଶ୍ୱର
ଜି - ଭଦ୍ରକ - ୭୫୬୧୨୫

—0—

# ଓଡ଼ିଶାରେ ଲବଣ ସତ୍ୟାଗ୍ରହ

ଐତିହାସିକ ଲବଣ ସତ୍ୟାଗ୍ରହର ଅବ୍ୟବହିତ ପୂର୍ବରୁ ୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ମହାତ୍ମାଗାନ୍ଧୀ ଲେଖିଥିଲେ; ଆଇନକୁ ଭଦ୍ରଭାବେ ଅବଜ୍ଞା କରିବା ସଂପର୍କରେ ମୁଁ ଭାରତର ଭାଇସରାୟଙ୍କୁ ଯେଉଁ ପତ୍ର ଦେଇଥିଲି ତା'ର ଉତ୍ତରରେ ସେ ଲେଖିଛନ୍ତି ଯେ ମୁଁ ଏପରି ଗୋଟିଏ କାର୍ଯ୍ୟକ୍ରମ ସଂପର୍କରେ ଚିନ୍ତା କରିଛି ଯଦ୍ୱାରା ସର୍ବସାଧାରଣଙ୍କ ଶାନ୍ତିଭଙ୍ଗ ହେବାର ଆଶଙ୍କା ରହିଛି ।

''ମୁଁ ନତଜାନୁ ହୋଇ ରୁଟି ଖଣ୍ଡିଏ ମାଗିଥିଲି, ତା' ବଦଳରେ ପଥର ଖଣ୍ଡେ ପାଇଲି । ବଡ଼ଲାଟ୍ ମୋତେ ନିରସ୍ତ୍ର କରିବାକୁ ଆଗ୍ରହୀ ଥିଲେ, ଲୁଣ ଉପରୁ ଟିକସ ଉଠାଇ ଦେଇପାରିଥାନ୍ତେ । ପ୍ରତ୍ୟେକ ଗରିବ ଲୋକ ତା'ର ତିନି ଦିନର ମଜୁରିକୁ ବାର୍ଷିକ ଲୁଣ କର ଆକାରରେ ସରକାରଙ୍କୁ ଦେବାକୁ ବାଧ୍ୟ ହେଉଛନ୍ତି । ଅନ୍ୟ କୌଣସି ଦେଶରେ କୌଣସି ନାଗରିକ ଏତେ ଉଚ୍ଚ ହାରରେ ଟିକସ ଦେଉଥିବାର ମୁଁ ଜାଣିନାହିଁ । ବଡ଼ଲାଟ ଚିରାଚରିତ ପ୍ରଥାରେ ମୋ ପତ୍ରର ଉତ୍ତର ଖଣ୍ଡିଏ ପଠାଇ ଦେବା ବ୍ୟତୀତ ବହୁକଥା କରିପାରିଥାନ୍ତେ । କିନ୍ତୁ ସେ ସମୟ ଆସି ନାହିଁ । ସେ ଯେଉଁ ଜାତିର ପ୍ରତିନିଧିତ୍ୱ କରୁଛନ୍ତି, ସେ ଜାତି ସହଜେ କାହାକୁ ବାଟ ଛାଡ଼େ ନାହିଁ; ସହଜେ ଭୁଲ ସ୍ୱୀକାର କରେ ନାହିଁ । ମୋ ଚିଠିରେ ଯାହା ଲେଖା ହୋଇଛି ତା'ର ଅର୍ଥ ହେଉଛି ଲୁଣ ଉପରୁ ଟିକସ ଉଠିଯିବା ସଙ୍ଗେ ସଙ୍ଗେ ଆହୁରି ଅନେକ ଜିନିଷ ଉଠିଯିବ ବୋଲି ମୁଁ ଆଶା କରୁଛି । ତାହା ସମୟ ହିଁ ପ୍ରମାଣ କରିବ ।

ବିଭିନ୍ନ ଆଇନ୍ ଓ ନିୟମାବଳୀ ସଂପର୍କରେ ସରକାର ପୁସ୍ତକର ଜଙ୍ଗଲ ସୃଷ୍ଟି କରିଥିଲେ ମଧ୍ୟ ଏ ଜାତି ଗୋଟିଏ ଆଇନ୍ ଜାଣେ, ତାହା ହେଉଛି ବ୍ରିଟିଶ ଶାସକର ଅବାରିତ ଇଚ୍ଛା । ଏ ଜାତି ଜେଲଖାନାର ଶାନ୍ତିକୁ ହିଁ ଶାନ୍ତି ବୋଲି ଜାଣେ । ଭାରତ ଗୋଟିଏ ବିରାଟ ବନ୍ଦୀଶାଳା । ମୁଁ ଆଇନକୁ ଅସ୍ୱୀକାର କରୁଛି'' ।

ମାର୍ଚ୍ଚ ୧୨ ତାରିଖ ୬ ଘଣ୍ଟା ୩୦ ମିନିଟ୍ ସମୟରେ ଗାନ୍ଧିଜୀ ତାଙ୍କର ୭୮ ଜଣ ଅନୁଗାମୀଙ୍କ ସହ ସାବରମତୀରୁ ୨୪୧ ମାଇଲ ଦୂର ଡାଣ୍ଡି ଅଭିମୁଖେ ୨୪ ଦିନିଆ ପଦଯାତ୍ରା ଆରମ୍ଭ କଲେ । ଏହି ଅନୁଗାମୀ ଦଳରେ ଜଣେ ଉତ୍କଳୀୟ ଶ୍ରୀ ମୋତି ଦାସ ଦାସ ମଧ୍ୟ ଥିଲେ ।

ମାର୍ଚ୍ଚ ୨୧ ତାରିଖରେ ସାବରମତୀ କୂଳରେ କଂଗ୍ରେସ କମିଟିର ବୈଠକ ବସି ସ୍ଥିର ହେଲା, ଯେଉଁ ପ୍ରଦେଶରେ ସମ୍ଭବ, ଲୁଣ ଆଇନ୍ ଭଙ୍ଗ କରାଯିବ, ଅନ୍ୟତ୍ର ଆଇନ ଅମାନ୍ୟ ସତ୍ୟାଗ୍ରହ କରାଯିବ । ଗିରଫଦାରୀ ଚାଲିଲେ କଂଗ୍ରେସ ସଭାପତି କମିଟି ପକ୍ଷରୁ ନିଜେ କାର୍ଯ୍ୟ ଚଳାଇ ପାରିବେ ବା ନିଜେ ଗିରଫ ହୋଇଗଲେ ଅନ୍ୟ ଜଣକୁ ସଭାପତି ମନୋନୀତ କରିପାରିବେ ।

ବ୍ରିଟିଶ ଶାସନ କାଳରେ ଓଡ଼ିଶା ଲବଣ ଶିଳ୍ପର ଧ୍ୱଂସ ସାଧିତ ହୋଇଥିଲା । ଘରକୁ ଲାଗି ସମୁଦ୍ର କିନ୍ତୁ ସମୁଦ୍ର କୂଳର ଲୋକ ସେ ଲୁଣ ମାରି ପାରିବ ନାହିଁ । ଢେଲା କଂସା ବନ୍ଧା ପକାଇ ତାକୁ ଲୁଣ କିଣିବାକୁ ପଡ଼େ ।

୧୯୧୭ ମସିହାରେ ଓମେଲ୍ ନାମକ ଜଣେ ଇଂରେଜ ଅର୍ଥନୀତିଜ୍ଞ ବଙ୍ଗ, ବିହାର, ଓଡ଼ିଶା ଓ ସିକିମ୍ ପୁସ୍ତକରେ ଲେଖିଥିଲେ ଯେ ୧୦୦ ବର୍ଷ ପୂର୍ବେ ଇଷ୍ଟଇଣ୍ଡିଆ କଂପାନୀ ଲୁଣମରା ଟିକସରୁ ଓଡ଼ିଶାରୁ ୧୮ ଲକ୍ଷ ଟଙ୍କା ଆୟ କରୁଥିଲେ ।

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସ୍ଥିର କଲେ ଯେ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ବାଲେଶ୍ୱରରେ ଲବଣ ସତ୍ୟାଗ୍ରହ ହେବ ଓ ଶ୍ରୀ ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲାରେ ଏଥିପାଇଁ କ୍ଷେତ୍ର ପ୍ରସ୍ତୁତ କରିବେ । ଅନ୍ୟ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଯେଉଁଠାରେ ସମ୍ଭବ ଆଇନ୍ ଅମାନ୍ୟ କରାଯାଇ ଲୁଣ ମରାଯିବ ।

ପରବର୍ତ୍ତୀରେ କଟକ ଠାରୁ ଇଞ୍ଚୁଡ଼ି ଗ୍ରାମକୁ ଯିବାଲାଗି ୨୧ ଜଣ ସତ୍ୟାଗ୍ରହୀଙ୍କୁ ପ୍ରଥମ ଦଳରେ ମନୋନୀତ କରାଗଲା । କଟକରୁ ଅପ୍ରେଲ ୬ ତାରିଖ ଦିନ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଏହି ଦଳ ଯାତ୍ରା ଆରମ୍ଭ କଲାବେଳେ କଟକ ସହରର ଜନସାଧାରଣ ରାସ୍ତାର ଦୁଇ ପାର୍ଶ୍ୱରେ ରହି ସେମାନଙ୍କୁ ଅଭିନନ୍ଦନ ଜଣାଇ ଥିଲେ । ଦୁଇ ଦିନ ପରେ ଗୋପବନ୍ଧୁ ଚୌଧୁରୀ ଓ ଅଚ୍ୟୁତ ବିହାରୀ ଆଚାର୍ଯ୍ୟ ଗିରଫ ହେବାର ଖବର ଆସି ପହଞ୍ଚିଲା । ୨ୟ ଦଳ ୯ ତାରିଖ ଦିନ୍, ତୃତୀୟ ଦଳ ୧୩ ତାରିଖ, ଚତୁର୍ଥ ଓ ପଞ୍ଚମ ଦଳ ୧୬ ତାରିଖରେ ଅଭିଯାନ ଆରମ୍ଭ କରିଥିଲେ । ମାର୍ଚ୍ଚ ଦ୍ୱିତୀୟ ଭାଗରେ ଓଡ଼ିଶାର ବିଭିନ୍ନ ସତ୍ୟାଗ୍ରହ

ଆନ୍ଦୋଳନ ପାଇଁ ପ୍ରଚାର ଓ ସ୍ୱେଚ୍ଛାସେବକ ସଂଗ୍ରହ ଚାଲିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ସମ୍ବଲପୁରଠାରେ ମାର୍ଚ୍ଚ ୧୭ ତାରିଖ ସନ୍ଧ୍ୟାରେ ଏକ ସଭାରେ ଭାଷଣ ଦେଇ ଗିରଫ ହୋଇଥିଲେ । ଶ୍ରୀ ପ୍ରିୟନାଥ ସରକାର, ଶ୍ରୀ ଗୋଲକନାଥ ଦେଓ, ଶ୍ରୀ ନିତ୍ୟାନନ୍ଦ କାନୁନଗୋ ଓକିଲାତି ଛାଡ଼ି ଏହି ଆନ୍ଦୋଳନରେ ଯୋଗ ଦେଲେ । ସମ୍ବଲପୁର, ବୋଲଗଡ଼, ବାଲେଶ୍ୱର, କଟକ ଓ ବ୍ରହ୍ମପୁରରେ ସତ୍ୟାଗ୍ରହୀ ଶିବିରମାନ ଖୋଲାଗଲା । ଗଞ୍ଜାମ୍ ଜିଲ୍ଲାରେ ସତ୍ୟାଗ୍ରହର ବାର୍ତ୍ତା ପ୍ରଚାର କରୁଥିବା ସମୟରେ ସରଳା ଦେବୀ ଗିରଫ ହେଲେ । କଟକର ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ବାସଭବନରେ ସତ୍ୟାଗ୍ରହୀ ଶିବିର ଖୋଲାଯାଇଥିଲା । ଇଞ୍ଚୁଡ଼ି ପଦଯାତ୍ରୀ ସତ୍ୟାଗ୍ରହୀମାନଙ୍କର ଯିବା ବାଟରେ ସଭା ସମିତି ଓ ପ୍ରଚାର ଆଦିର ଆୟୋଜନ କରିବା ପାଇଁ ଗୋଟିଏ ଆଗୁଆ ଦଳ ମାର୍ଚ୍ଚ ୩୧ ତାରିଖ ଦିନ ଯାଇଥିଲେ । ବାଲେଶ୍ୱରରେ ସତ୍ୟାଗ୍ରହ ପାଇଁ କ୍ଷେତ୍ର ପ୍ରସ୍ତୁତ କରୁଥିବା ୨ ଜଣ ମୁଖ୍ୟ କର୍ମୀ ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ଓ ଜୀବରାମଜୀ କଲ୍ୟାଣଜୀ କୋଠାରୀଙ୍କୁ ଅପ୍ରେଲ ୫ ତାରିଖ ଦିନ ଗିରଫ କରି ନିଆଯାଇ ୬ ମାସ ଲେଖା କାରାଦଣ୍ଡ ଦିଆଗଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସାତଦିନ ଅଶ୍ରମ କାରାଦଣ୍ଡ ଭୋଗିଲେ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ଗିରଫ ହେବା ପରେ ତାଙ୍କ ସ୍ଥାନରେ ଆଚାର୍ଯ୍ୟ ହରିହର ଦାସ ପଦଯାତ୍ରୀ ଦଳର ନେତୃତ୍ୱ ଗ୍ରହଣ କଲେ । ଏହି ପ୍ରଥମ ଦଳରେ ସର୍ବଶ୍ରୀ ମୁରାରି ତ୍ରିପାଠୀ, ଗୁଣନିଧି ମହାନ୍ତି, କିଶୋରୀ ମୋହନ ମହାପାତ୍ର, ଗୌରାଙ୍ଗ ଚରଣ ମହାନ୍ତି, ଶିବପ୍ରସାଦ ଭଗତ, ସୁଧାଂଶୁ ଶେଖର ଗୁପ୍ତା, ବିଶ୍ୱନାଥ ହୋତା, ରଘୁନାଥ ମିଶ୍ର, ଉଦୟ ନାଥ ମହାନ୍ତି, କାଳିପଦ ଦାସ, ଶ୍ରୀଧର ମହାରଣା, ବଳରାମ ଦାସ, ଗୋଲକନାଥ ଦେ, ଶ୍ରୀରାମ ପ୍ରସାଦ ସାହୁ ରହିଥିଲେ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ବୋଷ ଅପ୍ରେଲ ୯ ତାରିଖରେ କଟକରେ ଗିରଫ ହେଲେ । ସେଦିନ କଟକରୁ ମଦନ ମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ ୨୦ ଜଣ ସତ୍ୟାଗ୍ରହୀ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରାକଲେ । ଇତିମଧ୍ୟରେ ନିଖିଳ ଭାରତ କଂଗ୍ରେସ କମିଟିରୁ ନିର୍ଦ୍ଦେଶ ଆସିଲା ଯେ ଜାତୀୟ ସପ୍ତାହ ଭିତରେ ଅର୍ଥାତ୍ ଅପ୍ରେଲ ୧୩ ତାରିଖ ସୁଦ୍ଧା ସର୍ବତ୍ର ଲବଣ ଆଇନ୍ ଭଙ୍ଗ କରାଯିବ । ତେଣୁ ପ୍ରଥମ ସତ୍ୟାଗ୍ରହୀ ଦଳ ପଦବ୍ରଜରେ ଭଦ୍ରଖ ଓ ଦ୍ୱିତୀୟ ଦଳ ଯାଜପୁର ରେଳଷ୍ଟେସନ ଯାଏ ଆସି ସେଠାରୁ ରେଳ ଯୋଗେ ବାଲେଶ୍ୱର ଗଲେ ।

୧୨ ତାରିଖ ଦିନ ସନ୍ଧ୍ୟା ପ୍ରାର୍ଥନା ଶେଷ କରି ଆଚାର୍ଯ୍ୟ ମହାଶୟ ଓ ତାଙ୍କର ଦଳ ବାଲେଶ୍ୱରରୁ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରାକଲେ । ବାଲେଶ୍ୱରରୁ ଇଞ୍ଚୁଡ଼ି ୧୨ ମାଇଲ ବାଟ । ଏହି ରାସ୍ତାରେ ହଜାର ହଜାର ପୁରୁଷ ଓ ସ୍ତ୍ରୀ ଶଂଖ ହୁଳ ହୁଳି ଧ୍ୱନିରେ ଅଭିଯାତ୍ରୀମାନଙ୍କୁ ସ୍ୱାଗତ କରୁଥିଲେ । କୁଳବଧୂମାନେ ଘରୁ ବାହାରି ଆସି ତାଙ୍କୁ ଗ୍ରାମେ ଗ୍ରାମେ ଅର୍ଘ୍ୟ ବନ୍ଦାପନା କରୁଥିଲେ । ଓଡ଼ିଶା ଇତିହାସରେ ନାରୀର ଏହା ହିଁ ପ୍ରଥମ ସମୂହ ପର୍ଦ୍ଦା ତ୍ୟାଗ ।

୧୩ ତାରିଖ ସକାଳେ ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ଆଚାର୍ଯ୍ୟ ହରିହର ଦାସ ପ୍ରଥମ ଲବଣ ସଂଗ୍ରହକରି ଆଇନ ଭଙ୍ଗ କଲେ । ତାଙ୍କ ସାଙ୍ଗରେ ଶହ ଶହ ସାଧାରଣ ଲୋକ ଉତ୍ସାହ ସହକାରେ ଲବଣ ଆଇନ୍ ଭଙ୍ଗ କଲେ । ହଜାର ହଜାର ଲୋକ ଦର୍ଶକ ଭାବେ ମଧ୍ୟ ଉପସ୍ଥିତ ଥିଲେ । ପୁଲିସ୍ ବହୁସଂଖ୍ୟାରେ ଉପସ୍ଥିତ ଥିଲେ ମଧ୍ୟ ଗ୍ରାମବାସୀଙ୍କ ସହଯୋଗ ପାଉନଥିଲେ । ଆଚାର୍ଯ୍ୟ ହରିହରଙ୍କ ସମେତ ବହୁସଂଖ୍ୟକ ଆଇନ୍ ଅମାନ୍ୟକାରୀଙ୍କୁ ଗିରଫ କରାଯାଇ ବାଲେଶ୍ୱର ଜେଲକୁ ପଠାଇ ଦିଆଗଲା ।

ଇଞ୍ଚୁଡ଼ି ଅଞ୍ଚଳ ଆସ୍ତେ ଆସ୍ତେ ଏକ ରଣ କ୍ଷେତ୍ରରେ ପରିଣତ ହେଲା । ପ୍ରତି ଦିନ ଶହ ଶହ ଲୋକ ଆଇନ୍ ଅମାନ୍ୟ କରିବାରୁ ଓ ଆଇନଭଙ୍ଗ ଅପରାଧରେ ସେମାନଙ୍କୁ ଜେଲରେ ରଖିବା ପାଇଁ ସ୍ଥାନାଭାବ ଘଟିବାରୁ ପୁଲିସ୍ ପକ୍ଷରୁ ନିର୍ଦ୍ଦୟ ପ୍ରହାର ହେଲା । ମହଣ ମହଣ ଲୁଣ ତିଆରି ହେଲା । ତାକୁ ପ୍ରକାଶ୍ୟ ଭାବରେ ଆଣି ବାଲେଶ୍ୱର ସହରରେ ବିକ୍ରୟ କରିବା ପାଇଁ ଗ୍ରାମବାସୀମାନେ ଜିଦ୍ କଲେ । ହଜାର ହଜାର ଲୋକ ଲୁଣକୁ ମଥିରେ ରଖି ବ୍ୟୁହାକାରେ ଶୋଭାଯାତ୍ରା କରି ବାଲେଶ୍ୱର ଆସିଲେ । ୧୬ ତାରିଖ ଦିନ ବାଲେଶ୍ୱରଠାରୁ ପ୍ରାୟ ୪ ମାଇଲ ଦୂରରେ, ସୁନ୍ଦରୀ ଛକଠାରେ ଆଇନ୍ ଅମାନ୍ୟକାରୀଙ୍କ ଉପରେ ନିର୍ଦ୍ଦୟ ଭାବରେ ପୁଲିସ୍ ଲାଠି ଚଳାଇ ଶହ ଶହ ଲୋକଙ୍କୁ ସଂଜ୍ଞାହୀନ କରି ପକାଇଥିଲେ । ଆଖପାଖ ଗ୍ରାମର ସ୍ତ୍ରୀ ଲୋକମାନେ ଘରୁ ବାହାରି ଆସି ଅନୁଗୁଳର ଡାକ୍ତର କୃପାସିନ୍ଧୁ ଭୋକ୍ତାଙ୍କ ପରାମର୍ଶରେ ରାତି ସାରା ଆହତ ସତ୍ୟାଗ୍ରହୀମାନଙ୍କର ସେବା ଶୁଶ୍ରୁଷା କଲେ ।

ଏହି ପ୍ରହାର ବୃଷ୍ଟିକୁ ଭ୍ରୂକ୍ଷେପ ନକରି ଓଡ଼ିଶାର କୃଷକ କୁଳ ହସ ହସ ମୁଖରେ ସତ୍ୟାଗ୍ରହରେ ଯୋଗ ଦେଉଥିଲେ । ଓଡ଼ିଶାର ସବୁଆଡୁ ସତ୍ୟାଗ୍ରହୀ ବାଲେଶ୍ୱର ଶିବିରକୁ ଆସି ଇଞ୍ଚୁଡ଼ି ଅଞ୍ଚଳକୁ ଯାଉଥାନ୍ତି । ବାଲେଶ୍ୱର ଶିବିର ଶ୍ରୀ ହରେକୃଷ୍ଣ ମହତାବ ଚଳାଉଥିଲେ । ଶ୍ରୀ ଘନଶ୍ୟାମ ପାଣିଗ୍ରାହୀ ଓ ଶ୍ରୀ ଦୟାନନ୍ଦ ଶତପଥୀଙ୍କ ନେତୃତ୍ୱରେ ସମ୍ବଲପୁରରେ ଏକ ସତ୍ୟାଗ୍ରହ କମିଟି ଗଠିତ ହୋଇ, ଉପକୂଳ ଜିଲାକୁ ୪ ଟି ସତ୍ୟାଗ୍ରହୀ ଦଳ ଆସିଥିଲେ । ଶେଷ ଦଳରେ ଶ୍ରୀ ପ୍ରେମଶଙ୍କର ପଟ୍ଟନାୟକ, ମହାବୀର ସିଂହ, ଶିବଦେବ ମହାରାଜ, ଘନଶ୍ୟାମ ପାଣିଗ୍ରାହୀ ଓ ଲକ୍ଷ୍ମଣ ଗୁରୁ ଇତ୍ୟାଦି ଥିଲେ । ଏମାନେ ସମସ୍ତେ ଆଇନ୍ ଅମାନ୍ୟ କରି କାରା ଭୋଗିଥିଲେ । କ୍ରମଶଃ ସତ୍ୟାଗ୍ରହର କ୍ଷେତ୍ର ବିସ୍ତୃତ ହୋଇଗଲା । ଶ୍ରୀ କରୁଣାକର ପାଣିଗ୍ରାହୀ, ଶ୍ରୀ ନୀଳାମ୍ବର ଦାସ, ଶ୍ରୀବିଶ୍ୱନାଥ ହୋତା ଓ ଶ୍ରୀ ଭାଗବତ ସାହୁ ଇତ୍ୟାଦିଙ୍କ ଯୋଜନା କ୍ରମେ ବାଲେଶ୍ୱରର ସମଗ୍ର ଉପକୂଳ ସତ୍ୟାଗ୍ରହର କ୍ଷେତ୍ର ହୋଇଗଲା । ଶ୍ରୀଯୁକ୍ତା ରମାଦେବୀ, ଶ୍ରୀଯୁକ୍ତା ମାଳତୀ ଦେବୀ, କୁଜଙ୍ଗର ତତ୍କାଳୀନ ରାଣୀମା, କଟକ ଜିଲ୍ଲାର କୁଜଙ୍ଗ, ପଣ୍ଡୁଆ ଓ ଗଡ଼ାକିପୁରଠାରେ ଏହି ଆନ୍ଦୋଳନ ଡେକାଇ ରଖିଥିଲେ । ସମୁଦ୍ର କୂଳେ କୂଳେ ବାଲେଶ୍ୱର ଜିଲ୍ଲାର କଷବା, ବସ୍ତା, ଇରମ୍, ପଦୁଆଁ, କହୁଦା ଓ ବିଦେଇପୁରଠାରେ ସତ୍ୟାଗ୍ରହ କେନ୍ଦ୍ରମାନ ସ୍ଥାପିତ ହେଲା । ପୁରୀ ଜିଲ୍ଲାର କାକଟପୁର ଥାନା ଅନ୍ତର୍ଗତ କୁହୁଡ଼ି, ଅସ୍ତରଙ୍ଗ, ଖଣ୍ଡସାହୀ ଓ ମଶାଣି ଠାରେ ଲୁଣ ମରାଗଲା । ପୁରୀର ଜିଲ୍ଲା ମାଜିଷ୍ଟ୍ରେଟଙ୍କ

ତତ୍କାଳୀନ ରିପୋର୍ଟରୁ ମଧ୍ୟ ଜଣାଯାଏ ଟିକିଲାଠାରୁ ମଧ୍ୟ ଲୁଣମରା ଚାଲିଥିଲା ।

ଗଞ୍ଜାମରେ ଶ୍ରୀ ନିରଞ୍ଜନ ପଟ୍ଟନାୟକ, ଶ୍ରୀ ଶଶୀଭୂଷଣ ରଥ, ଶ୍ରୀ ବିଶ୍ୱନାଥ ଦାସ ଓ ଶ୍ରୀ ଦିବାକର ପଟ୍ଟନାୟକଙ୍କ ନେତୃତ୍ୱରେ ଏକ ଲୁଣମରା କେନ୍ଦ୍ର ଖୋଲା ଯାଇଥିଲା । ଏମାନଙ୍କ ସହ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ନେତୃତ୍ୱରେ କୋରାପୁଟର ଦଳେ ସ୍ୱେଚ୍ଛାସେବୀ ଯୋଗ ଦେଇଥିଲେ । ଏମାନେ ହୁମାସ୍ଥିତ ଏକ ଲୁଣ କାରଖାନାକୁ ଅଟକ କରିବା ପାଇଁ ଏକ ନୋଟିସ୍ ଦେଇଥିଲେ । ଏହା ଫଳରେ ଅନେକ ସ୍ୱେଚ୍ଛାସେବୀ ଗିରଫ ହୋଇ ପ୍ରଥମେ ବିଶାଖା ପାଟଣା ପରେ ରାଜମହେନ୍ଦ୍ରୀ ଏବଂ ଭେଲୋର ଜେଲ୍‌ରେ ରହିଲେ ।

ପୁରୀ ଜିଲ୍ଲାରେ ପଣ୍ଡିତ ନୀଳକଣ୍ଠ ଦାସ ଓ ଜଗନ୍ନାଥ ରଥଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଚାଲିଥିଲା । ପଣ୍ଡିତ ନୀଳକଣ୍ଠଙ୍କୁ ଗିରଫ କରାଯାଇ ୬ ମାସ କାରାଦଣ୍ଡ ଦିଆଗଲା ।

କଟକ ଜିଲ୍ଲାର କୁଜଙ୍ଗ ଓ ଏରସମାର ବିସ୍ତୃତ ଅଞ୍ଚଳରେ କୁଜଙ୍ଗର ପୂର୍ବତନ ରାଣୀ ଭାଗବତୀ ପାଟ ମହାଦେଈ, ନାରାୟଣ ବୀରବର ସାମନ୍ତ, ଶରତଚନ୍ଦ୍ର ଦାସ, ନବମୋହନ ମହାନ୍ତି, ରଘୁନାଥ ଦାସ, ବାଉଧର ଶତପଥୀ, ଜଗନ୍ନାଥ ଶତପଥୀ, ଦୁର୍ଯୋଧନ ପଟ୍ଟନାୟକ, ବାବାଜୀ ଭୀମସେନ ଦାସ , ଗଞ୍ଜାମ ଜିଲ୍ଲାର ନାରାୟଣ ପାତ୍ର ଓ ବାଲେଶ୍ୱରର ମହେଶଚନ୍ଦ୍ର ପ୍ରଧାନ ଲୁଣ ମାରିବା କାମରେ ଲାଗି ପଡ଼ିଲେ ।

ବୀରକିଶୋର ଦାସ ଓ ବାଞ୍ଛାନିଧି ମହାନ୍ତିଙ୍କ ଜାତୀୟତା ବୋଧକ ସଙ୍ଗୀତ ପୁରପଲ୍ଲୀରେ ପ୍ରବଳ ଉନ୍ମାଦନା ସୃଷ୍ଟି କରୁଥାଏ । ଛୋଟ ପିଲାଏ ଗାଆନ୍ତି -

ତୁମେ ମାର କେତେ ବେତ ମାରିବ,
ଜୀବନକୁ ଆମେ ପାଣି ଛଡ଼ାଇଛୁ, ତୁମେ କି ଆମକୁ ପାରିବ ।

ତା ଛଡ଼ା ଦେଶାତ୍ମବୋଧ ଲେଖାଗୁଡ଼ିକ ମଧ୍ୟରୁ ଶ୍ରୀ ହରେକୃଷ୍ଣ ମହତାବଙ୍କର 'ପଲାସୀ ଅବସାନେ' ଉତ୍କଳ ଗୋପୀନାଥ ପ୍ରେସଦ୍ୱାରା ପ୍ରକାଶିତ ଲୁଣମରା ଗୀତ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସ୍ୱରାଜପାଳା, ଶ୍ରୀ ରାମପ୍ରସାଦ ସିଂହ ଓ କୁନ୍ତଳା କୁମାରୀ ସାବତଙ୍କର ୨ ଖଣ୍ଡ ବହି ବାଜ୍ୟାପ୍ତ ହୋଇଗଲା ।

ବାଲେଶ୍ୱର ଜିଲ୍ଲାର ସତ୍ୟାଗ୍ରହ ସାରା ଭାରତରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ସେ ସମୟରେ 'ୟଂଗ ଇଣ୍ଡିଆ' ପତ୍ରିକାରେ ଓଡ଼ିଶାର ଲବଣ ସତ୍ୟାଗ୍ରହ ରିପୋର୍ଟ ବିସ୍ତୃତ ଭାବେ ପ୍ରକାଶିତ ହେଉଥିଲା ।

ଇଞ୍ଚୁଡ଼ି ସତ୍ୟାଗ୍ରହରେ ଯୋଗ ଦେବାପାଇଁ ଦଳକୁ ଦଳ କର୍ମୀମାନେ ଓଡ଼ିଶାର ସବୁ ଅଞ୍ଚଳରୁ ଆସିଥିଲେ । କଟକରୁ ''ଲୌହସ୍ତମ୍ଭ ବାହିନୀ''; ପୁରୀରୁ 'ପତିତପାବନ ବାହିନୀ' ସମ୍ବଲପୁର ଓ ଗଞ୍ଜାମରୁ ଗୋଟିଏ ଗୋଟିଏ ବାହିନୀ ଓ ଓଡ଼ିଶା ଗୁଜୁରାଟୀମାନଙ୍କ ଏକ ବାହିନୀ ଇଞ୍ଚୁଡ଼ିରେ ଯୋଗ ଦେଇଥିଲେ । ଇଞ୍ଚୁଡ଼ି ଆଖପାଖ ଗ୍ରାମର ଲୋକେ ଗାଆଁକୁ ଗାଆଁ ଉଜାଡ଼ି ହୋଇ ଲୁଣ ମାରିଲେ । ବାଲେଶ୍ୱରର ପରମିଟ୍ କୋଠିରେ ସତ୍ୟାଗ୍ରହ ଶିବିର ହୋଇଥିଲା । ସଂଯୋଗବଶତଃ ଲୁଣ ଆଇନ୍ ପ୍ରଚଳନ ହେବାର ପ୍ରଥମ ଅବସ୍ଥାରେ ଏହି ଘରେ ଲୁଣ ମାରିବା ପାଇଁ ଫିସ୍ ଆଦାୟ କରି ପରିମିଟ୍ ଦିଆଯାଉଥିଲା । ଅପ୍ରେଲ ୧୭ ତାରିଖ ଦିନ କଟକରୁ ଗୋପବନ୍ଧୁ ଚୌଧୁରୀ କାରାମୁକ୍ତ ହୋଇ ବାଲେଶ୍ୱର ଆସି ସେହି ଶିବିରରେ ପହଞ୍ଚିଲେ । ଡ଼ାକ୍ତର କୃଷ୍ଣ ପ୍ରସାଦ ମହାନ୍ତି ଓ ଶ୍ରୀ ହରେକୃଷ୍ଣ ମହତାବଙ୍କ ସହ ସେ ସେଦିନ ଗିରଫ ହୋଇଗଲେ । ପରେ ସେମାନଙ୍କୁ ଦେଢ଼ବର୍ଷ ଲେଖାଁଏ ଦଣ୍ଡାଦେଶ ହୋଇଥିଲା ।

ଇଞ୍ଚୁଡ଼ି ଓ ଅନ୍ୟାନ୍ୟ ୧୨ ଟି ପଡ଼ୋଶୀ ଗ୍ରାମର ଅଧିବାସୀମାନେ ଲବଣ ସତ୍ୟାଗ୍ରହ ସଙ୍ଗେ ସଙ୍ଗେ ଚୌକିଦାରୀ ଟିକସ ବିରୁଦ୍ଧରେ ଆନ୍ଦୋଳନ ଅପରାଜେୟ ରହିଥିଲା । ପୋଲିସ ଓ ଲୋକଙ୍କ ମଧ୍ୟରେ କିଛିଏ ସଂଘର୍ଷ ହୋଇଗଲା । ଫଳରେ ବହୁ ପୋଲିସ୍ ତହିଁ ପରଦିନ ଶ୍ରୀଜଙ୍ଗରେ ପହଞ୍ଚିଲେ । ସେ ଗ୍ରାମର ଶ୍ରୀ ଗୌର ମୋହନ ଦାସ ଓ ଶ୍ରୀ ବିଦ୍ୟାଧର ରଥଙ୍କ ୬୦ ହଜାର ଟଙ୍କାର ସଂପତ୍ତି ଲୁଟ୍ ହୋଇଗଲା । ଶ୍ରୀ ଜଙ୍ଗରେ ଘଟିଥିବା କରୁଣ କାହାଣୀର ବର୍ଣ୍ଣନା ଦେଇ କବି ବାଞ୍ଛାନିଧି ଦରଦୀ କଣ୍ଠରେ କହିଥିଲେ -

କିଏ ନ ଶୁଣିଛି ସେ ଦାରୁଣ କଥା,
କିଏ ନ ଜାଣିଛି ଗୋ
ଯିଏ ବା ଦେଖିଛି ସେ ନାରକୀ ଲୀଳା,
ତା ହୃଦେ କି ବ୍ୟଥା ହାଣିଛି ଗୋ ।
ଦୁଃଖିନୀ ଉତ୍କଳେ ଶ୍ରୀଜଙ୍ଗ କାହାଣୀ,
ପ୍ରତି ପ୍ରାଣେ ଦେଲା କି ସନ୍ତାପ ଆଣି,
ପ୍ରତି ଲୋମକୂପ ଶିହରୀ ଉଠିଲା,
ଜାଣେ ଯେ ମନକୁ ଆଣିଛି ଗୋ ।

ଶ୍ରୀଯୁକ୍ତା ରମା ଦେବୀ, ଗୋକୁଳାନନ୍ଦ ମହାନ୍ତି, ଗୁଣନିଧି ମହାନ୍ତି ଓ ବିଶ୍ୱନାଥ ହୋତା ପ୍ରଭୃତି ଏ ଅଞ୍ଚଳକୁ ଆସି ଲୋକମାନଙ୍କୁ ସାହସ ସାନ୍ତ୍ୱନା ଦେଇଥିଲେ । ରମାଦେବୀଙ୍କ ସଙ୍ଗେ ଉତ୍ତ୍ରଖଣ୍ଡରୁ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଭଉଣୀ କୋକିଳା ଦେବୀ ଓ ଭାଇ କମଳାକାନ୍ତ ମହାପାତ୍ର ମଧ୍ୟ ଯାଇଥିଲେ ।

ବାସୁଦେବପୁର ଥାନାର ଇରମ ଗ୍ରାମଠାରେ ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ କବି ବାଞ୍ଛାନିଧି ମହାନ୍ତି । ସମ୍ବଲପୁର ଓ ଗଞ୍ଜାମର

ସତ୍ୟାଗ୍ରହୀମାନେ ମଧ୍ୟ ଏହି କେନ୍ଦ୍ରକୁ ଆସିଥିଲେ । ପୋଲିସ୍ ବାଞ୍ଛାନିଧି ମହାନ୍ତି, ଲକ୍ଷ୍ମୀନାରାୟଣ ପାଢ଼ୀ, ସୁଦର୍ଶନ ପଣ୍ଡାଙ୍କ ସମେତ କେତେଜଣ କର୍ମୀଙ୍କୁ ଗିରଫ କରିଥିଲେ ।

ସତ୍ୟାଗ୍ରହରେ ଯେଉଁମାନେ ବିଶେଷ ଉତ୍ସାହ ପ୍ରକାଶ କରିଥିଲେ, ସେମାନଙ୍କ ଉପରେ ପ୍ରତିଶୋଧ ନେବାପାଇଁ ପୋଲିସ୍ ତତ୍ପର ଥିଲେ । ଜୋରିମାନା, ପିଟୁଣୀ ଟିକସ ଆକାରରେ ସତ୍ୟାଗ୍ରହୀମାନେ ସେତେବେଳେ ପ୍ରାୟ ୨ ଲକ୍ଷ ଟଙ୍କା କ୍ଷତି ସହିଥିଲେ । ଏହି ଆନ୍ଦୋଳନରେ ଓଡ଼ିଶାରେ ପ୍ରଥମ ଥର ପାଇଁ ବ୍ୟାପକ ନାରୀ ଜାଗରଣ ହୋଇଥିଲା । ଶ୍ରୀମତୀ ରମାଦେବୀ, ମାଳତୀ ଦେବୀ, ସରଳା ଦେବୀ, ଅନ୍ନପୂର୍ଣ୍ଣା ଦେବୀ, ସାବିତ୍ରୀ, ଅମ୍ବିକା ଓ ବହୁ ନାରୀ କର୍ମୀ ତ୍ୟାଗପୂତ ଜୀବନର ପରମ୍ପରା ରକ୍ଷା କରିପାରିଥିଲେ । ଲୁଣମରା ଅଞ୍ଚଳରେ ପୁଲିସ୍ ଅତ୍ୟାଚାରର ପ୍ରତିବାଦ ସ୍ୱରୂପ ଓ କଂଗ୍ରେସ କମିଟିର ନିର୍ଦ୍ଦେଶ ଅନୁଯାୟୀ ସହରମାନଙ୍କରେ ବିଦେଶୀ ଲୁଗା ଦୋକାନ ଓ ନିଶା ଦୋକାନ ପିକେଟିଂ ବିଧିବଦ୍ଧ ଭାବରେ ଚାଲିଲା । କଂଗ୍ରେସ ଅଫିସ ସରକାର ବନ୍ଦ କରିଦେଲେ । ଏହାର ପ୍ରତିବାଦରେ ସଭା କରି ଶ୍ରୀମତୀ ବୀଣାପାଣି ଦେବୀ ଓ ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ଗିରଫ ହେଲେ । ବଡ଼ଲାଟ ଅର୍ଡ଼ିନାନ୍ସ ଉପରେ ଅର୍ଡ଼ିନାନସ ଜାରି କଲେ । କଟକର ସମାଜ ଓ ବାଲେଶ୍ୱରର ପ୍ରଜାତନ୍ତ୍ର ଖବର କାଗଜକୁ ଜାମିନି ମଗାଗଲା । ଏମାନେ ଜାମିନି ନଦେଇ ଖବର କାଗଜ ପ୍ରକାଶ ବନ୍ଦ କରିଦେଲେ । ଯେଉଁମାନେ କଂଗ୍ରେସ ଲୋକଙ୍କୁ ଆଶ୍ରୟଦେଲେ ସେମାନଙ୍କୁ ଜେଲ ଜୋରିମାନା ହେଲା । ଓଡ଼ିଶାରୁ ପ୍ରାୟ ୩,୦୦୦ ସତ୍ୟାଗ୍ରହୀଙ୍କୁ ଗିରଫ କରି ଜେଲକୁ ପଠାଯାଇଥିଲା । ପଣ୍ଡିତ କୃପାସିନ୍ଧୁ ହୋତା, କେଦାର ନାଥ ରାୟ, କରୁଣାକର ପାଣିଗ୍ରାହୀ, ନୀଳାମ୍ବର ଦାସ, ମଥୁରା ମୋହନ ବେହେରା, କିଶୋରୀ ମୋହନ ଯୋରଦାର, ଜଗନ୍ନାଥ ଦାସ,ମଥୁରା ମୋହନ ବେହେରା, କିଶୋରୀ ମୋହନ ଯୋରଦାର, ଜଗନ୍ନାଥ ମିଶ୍ର, ସତ୍ୟବାଦୀ ନନ୍ଦ, ପ୍ରାଣକୃଷ୍ଣ ପଢ଼ିହାରୀ, ଗୋବିନ୍ଦ ମିଶ୍ର, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, କୃଷ୍ଣଚନ୍ଦ୍ର ପ୍ରଧାନ, ଲିଙ୍ଗରାଜ ମିଶ୍ର, ନାରାୟଣ ବୀରବର ସମନ୍ତ ଓ ପୂର୍ବ ବର୍ଣ୍ଣିତ ସମସ୍ତ ନେତାମାନେ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । ପୂର୍ଣ୍ଣ ବର୍ଷେକାଳ ଅବିରାମ ଯୁଦ୍ଧ ଲାଗି ରହିଲା । ଶେଷରେ ୧୯୩୧ ମସିହା ମାର୍ଚ୍ଚ ୫ ତାରିଖରେ ଗାନ୍ଧୀ- ଇରଉଇନ ଚୁକ୍ତି ସ୍ୱାକ୍ଷରିତ ହେବା ଫଳରେ ଲୋକମାନେ ଲୁଣ ମାରିବାର ଅଧିକାର ପାଇଲେ ଓ ରାଜନୈତିକ ବନ୍ଦୀମାନେ ଖଲାସ ହେଲେ । ଓଡ଼ିଶାର ସାଧାରଣ ଜନତା ଯେପରି ଉତ୍ସାହର ସହ ଶୋଷଣମୂଳକ ଲବଣ ଆଇନ୍‌କୁ ଅମାନ୍ୟ କରିଥିଲେ ତାହା ଇତିହାସରେ ଏକ ଗୌରବମୟ ଅଧ୍ୟାୟ ହୋଇ ରହିବ ।

# ଭାରତରେ ଭୋଟଦାତା ୬୫ କୋଟି

ଭାରତରେ ଏବେ ମୋଟ ଭୋଟଦାତା ହେଉଛନ୍ତି ୬୫ କୋଟି । ୧୯୫୨ରେ ଏମାନଙ୍କ ସଂଖ୍ୟା ଥିଲା ୧୭ କୋଟି ୩୦ ଲକ୍ଷ । ଭୋଟ ଦେବାଲାଗି ମହିଳା ଭୋଟଦାତାମାନଙ୍କ ଆଗ୍ରହ ଅଧିକ । ପଚାଶ ଦଶକରେ ଏମାନଙ୍କ ସଂଖ୍ୟା ଥିଲା ଶତକଡ଼ା ୩୩ ଦଶମିକ ୮ ଭାଗ । ଏବେ ଶତକଡ଼ା ୬୦ ଭାଗ ମହିଳା ଭୋଟ ଦେଉଛନ୍ତି । ନିର୍ବାଚନରେ ମହିଳା ପ୍ରାର୍ଥୀଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି । ଦଶମ ଲୋକସଭାରେ ୪୧ ଜଣ ମହିଳା ସଦସ୍ୟଥିବାବେଳେ ଏକାଦଶ ଲୋକସଭାରେ ୪୪ ଜଣ ଥିଲେ ।

୧୯୮୯ ରେ ସଂବିଧାନ ସଂଶୋଧନ କରାଯାଇ ଭୋଟ ଦେବା ବୟସ ୨୧ ବର୍ଷରୁ ୧୮ ବର୍ଷକୁ ହ୍ରାସ କରାଯାଇଛି । ୧୮-୨୧ ବର୍ଷ ବୟସ୍କ ଯୁବକମାନଙ୍କୁ ଭୋଟଦାତା କରାଯିବା ଫଳରେ ଭୋଟଦାତାଙ୍କ ସଂଖ୍ୟା ଶତକଡ଼ା ୯୧ ଭାଗ ବୃଦ୍ଧି ପାଇଗଲା । ଏବେ ଆମ ଦେଶରେ ୭ ଟି ଜାତୀୟ ଦଳ । ୩୫ ଟି ଆଞ୍ଚଳିକ ଦଳ । ଏହାବାଦ ଆହୁରି ଅଣସ୍ୱୀକୃତି ପ୍ରାପ୍ତ ଛଅଶହ ରାଜନୈତିକ ଦଳ ଅଛନ୍ତି ।

# ଓଡ଼ିଶାରେ ଲୋକସଭା ନିର୍ବାଚନ

## (୧୯୫୧-୧୯୯୮)

### ପ୍ରଥମ ଲୋକସଭା ନିର୍ବାଚନ - ୧୯୫୧-୫୨

| | | |
|---|---|---|
| ନିର୍ବାଚନ ମଣ୍ଡଳୀ | : | ୧୬ (ଯୁଗ୍ମ - ୪) |
| ଆସନ ସଂଖ୍ୟା | : | ୨୦ |
| ଭୋଟର | : | ୭,୬୦୮,୧୬୧ |
| କାଏମ୍ ଭୋଟ | : | ୩,୬୪୯,୪୦୩ |
| ପ୍ରାର୍ଥୀ ସଂଖ୍ୟା | : | ୫୭ |

| ପ୍ରତିଦ୍ବନ୍ଦ୍ବୀ ଦଳ | ପ୍ରାର୍ଥୀ ସଂଖ୍ୟା | ନିର୍ବାଚିତ |
|---|---|---|
| କଂଗ୍ରେସ | ୧୮ | ୧୧ |
| ସି.ପି.ଆଇ | ୪ | ୧ |
| ଗଣତନ୍ତ୍ର ପରିଷଦ | ୧୨ | ୫ |
| ସୋସଲିଷ୍ଟ ପାର୍ଟି | ୧୦ | ୧ |
| ସ୍ୱାଧୀନ ଓ ଅନ୍ୟାନ୍ୟ | ୧୪ | ୨ |

| ନିର୍ବାଚନ ମଣ୍ଡଳୀ | ନିର୍ବାଚିତ ପ୍ରାର୍ଥୀ | ଦଳ |
|---|---|---|
| ୧. ମୟୂରଭଂଜ | ରାମଚନ୍ଦ୍ର ମାଝି | କଂଗ୍ରେସ |
| ୨. ବାଲେଶ୍ୱର(ଯୁଗ୍ମ) | କାହ୍ନୁ ଚରଣ ଜେନା | କଂଗ୍ରେସ |
| | ଭାଗବତ ସାହୁ | କଂଗ୍ରେସ |
| ୩. କେନ୍ଦ୍ରାପଡ଼ା | ନିତ୍ୟାନନ୍ଦ କାନୁନଗୋ | କଂଗ୍ରେସ |
| ୪. କଟକ | ହରେକୃଷ୍ଣ ମହତାବ | କଂଗ୍ରେସ |
| ୫. ପୁରୀ | ଲୋକନାଥ ମିଶ୍ର | କଂଗ୍ରେସ |
| ୬.ଖୋର୍ଦ୍ଧା | ଲିଙ୍ଗରାଜ ମିଶ୍ର | କଂଗ୍ରେସ |
| ୭. ଗୁମୁସର | ଉମାଚରଣ ପଟ୍ଟନାୟକ | ସ୍ୱାଧୀନ |
| ୮. ଗଞ୍ଜାମ | ବିଜୟ ଚନ୍ଦ୍ର ଦାସ | ସି.ପି.ଆଇ |
| ୯. ନବରଙ୍ଗପୁର | ପି. ସୁବା ରାଓ | ଗଣତନ୍ତ୍ର ପରିଷଦ |
| ୧୦. କଳାହାଣ୍ଡି - ବୋଲାଙ୍ଗିର | ଶିଶିଧାରୀ ଭୋଇ | ଗଣତନ୍ତ୍ର ପରିଷଦ |
| | ରାଜେନ୍ଦ୍ର ନାରାୟଣ ସିଂହଦେଓ | ଗଣତନ୍ତ୍ର ପରିଷଦ |
| ୧୧. ସମ୍ବଲପୁର | ନଟବର ପାଣ୍ଡେ | ଗଣତନ୍ତ୍ର ପରିଷଦ |
| ୧୨. ଦେଓଗଡ଼ | ଟି. ଦାସ ଧୁରାନି | ସ୍ୱାଧୀନ |
| ୧୩. ଢେଙ୍କାନାଳ | ନିରଞ୍ଜନ ଜେନା | କଂଗ୍ରେସ |
| ପଶ୍ଚିମ କଟକ(ଯୁଗ୍ମ) | ସାରଙ୍ଗଧର ଦାସ | ସୋସଲିଷ୍ଟ ପାର୍ଟି |
| ୧୪. ସୁନ୍ଦରଗଡ଼ | ଶିବ ନାରାୟଣ ସିଂହ | କଂଗ୍ରେସ |
| ୧୫. ଯାଜପୁର-କେନ୍ଦୁଝର (ଯୁଗ୍ମ) | ଲକ୍ଷ୍ମୀଧର ଜେନା | କଂଗ୍ରେସ |
| | ଭୁବନାନନ୍ଦ ଦାସ | କଂଗ୍ରେସ |
| ୧୬. ରାୟଗଡ଼ା-ଫୁଲବାଣୀ | ଟି. ସାଙ୍ଗାନ୍ନା | ଗଣତନ୍ତ୍ର ପରିଷଦ |
| | (ଅପ୍ରତିଦ୍ବନ୍ଦ୍ବୀ) | କଂଗ୍ରେସ |

### ଦ୍ବିତୀୟ ଲୋକସଭା - ୧୯୫୭

| | | |
|---|---|---|
| ନିର୍ବାଚନ ମଣ୍ଡଳୀ | : | ୧୪ (ଯୁଗ୍ମ- ୬) |
| ଆସନ ସଂଖ୍ୟା | : | ୨୦ |
| ଭୋଟର | : | ୭,୯୮୩,୯୧୫ |
| ଭୋଟଦାନ | : | ୪,୫୯୮,୩୨୨ |
| କାଏମ୍ ଭୋଟ | : | ୪,୪୪୦,୪୯୦ |
| ଭୋଟ ଗ୍ରହଣ କେନ୍ଦ୍ର | : | ୬,୭୨୧ |
| ପ୍ରାର୍ଥୀ ସଂଖ୍ୟା | : | ୫୭ |

| ପ୍ରତିଦ୍ବନ୍ଦ୍ବୀ ଦଳ | ପ୍ରାର୍ଥୀ ସଂଖ୍ୟା | ନିର୍ବାଚିତ |
|---|---|---|
| କଂଗ୍ରେସ | ୨୦ | ୭ |
| ସିପି.ଆଇ | ୫ | ୧ |
| ଗଣତନ୍ତ୍ର ପରିଷଦ | ୧୫ | ୭ |
| ପି.ଏସ.ପି | ୬ | ୨ |
| ସ୍ୱାଧୀନ ଓ ଅନ୍ୟାନ୍ୟ | ୧୧ | ୩ |

| ନିର୍ବାଚନ ମଣ୍ଡଳୀ | ନିର୍ବାଚିତ ପ୍ରାର୍ଥୀ | ଦଳ |
|---|---|---|
| ୧. ମୟୂରଭଞ୍ଜ | ରାମଚନ୍ଦ୍ର ମାଝି | ସ୍ୱାଧୀନ |
| ୨. ବାଲେଶ୍ୱର (ଯୁଗ୍ମ) | କାହ୍ନୁ ଚରଣ ଜେନା | କଂଗ୍ରେସ |
| | ଭାଗବତ ସାହୁ | କଂଗ୍ରେସ |
| ୩. କେନ୍ଦ୍ରାପଡ଼ା (ଯୁଗ୍ମ) | ସୁରେନ୍ଦ୍ର ନାଥ ଦ୍ବିବେଦୀ | ପି. ଏସ. ପି |
| | ବୈଷ୍ଣବ ଚରଣ ମଲ୍ଲିକ | ପି.ଏସ.ପି. |
| ୪. କଟକ | ନିତ୍ୟାନନ୍ଦ କାନୁନ୍‌ଗୋ | କଂଗ୍ରେସ |
| ୫. ପୁରୀ | ଚିନ୍ତାମଣି ପାଣିଗ୍ରାହୀ | ସି.ପି. ଆଇ |
| ୬. ଭୁବନେଶ୍ୱର | ନୃସିଂହ ଚରଣ ସାମନ୍ତରାୟ | କଂଗ୍ରେସ |
| ୭. ଗଞ୍ଜାମ (ଯୁଗ୍ମ) | ଉମାଚରଣ ପଟ୍ଟନାୟକ | ସ୍ୱାଧୀନ |
| | ମୋହନ ନାୟକ | କଂଗ୍ରେସ |
| ୮. କୋରାପୁଟ(ଯୁଗ୍ମ) | ଆର. ଜଗନ୍ନାଥ ରାଓ | କଂଗ୍ରେସ |
| | ଟି. ସାଙ୍ଗାନ୍ନା | କଂଗ୍ରେସ |
| ୯.କଳାହାଣ୍ଡି (ଯୁଗ୍ମ) | ପ୍ରତାପ କେଶରୀ ଦେଓ | ଗଣତନ୍ତ୍ର ପରିଷଦ |
| | ବିଜୟ ଚନ୍ଦ୍ର ପ୍ରଧାନ | ଗଣତନ୍ତ୍ର ପରିଷଦ |
| ୧୦. ସମ୍ବଲପୁର(ଯୁଗ୍ମ) | ଶ୍ରଦ୍ଧାକର ସୁପକାର | ଗଣତନ୍ତ୍ର ପରିଷଦ |
| | ବନମାଳୀ କୁମ୍ଭାର | ଗଣତନ୍ତ୍ର ପରିଷଦ |
| ୧୧. ଅନୁଗୁଳ | ପି.ଭି. ଚନ୍ଦ୍ରକୁମାର | ଗଣତନ୍ତ୍ର ପରିଷଦ |
| ୧୨. ଢେଙ୍କାନାଳ | ସୁରେନ୍ଦ୍ର ମହାନ୍ତି | ଗଣତନ୍ତ୍ର ପରିଷଦ |
| ୧୩. ସୁନ୍ଦରଗଡ଼ | ଚନ୍ଦ୍ରମଣି କହ୍ଳା | ଗଣତନ୍ତ୍ର ପରିଷଦ |
| ୧୪. କେନ୍ଦୁଝର | ଲକ୍ଷ୍ମୀନାରାୟଣ ଭଞ୍ଜଦେଓ | ସ୍ୱାଧୀନ |

